# ସାରଳା ଦର୍ଶନ



ଶ୍ରୀ ଶ୍ରୀ ସାରଦା ଠାକୁରାଣୀ
ଝଙ୍କଡ଼

# ଶାରଳା ଦର୍ଶନ

## ଭାରତୀୟ ସାହିତ୍ୟ, ସଂସ୍କୃତି ଓ ଧର୍ମ ଦର୍ଶନର ମୁଖପତ୍ର

**ଏତେ ବୀଜରୁ ଏତେ ତରୁ, ଦେଖିହସିଲେ ନୃପକନ୍ଦରୁ**

ଅଣୋରଣୀୟାନ, ମହତୋ ମହୀୟାନ ॥

ବ୍ରହ୍ମ ବା ଆତ୍ମା ଯେପରି ବିଶାଳରୁ ବିଶାଳତମ, ବିଶ୍ୱବ୍ୟାପକ ସେହିପରି ଅଣୁରୁ ମଧ୍ୟ ସାନ ହୋଇ ସଚରାଚର ଜୀବଜଗତ ମଧ୍ୟରେ ଅବସ୍ଥାନ କରିଥାଏ ।

ମୁଖ୍ୟ ପୃଷ୍ଠପୋଷକ— **ମାତୃକୃପା**

ଆଶୀର୍ବାଦକ— ଶାରଳା ସ୍ମୃତି ପ୍ରତିଷ୍ଠାତା :
**ଡଃ ହରେକୃଷ୍ଣ ମହତାବ**

ମୁଖ୍ୟ ଉପଦେଷ୍ଟା : **ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ**
ପୃଷ୍ଠ ପୋଷକ : **ଶ୍ରୀଯୁକ୍ତ ବସନ୍ତ କୁମାର ବିଶ୍ୱାଳ**
ମୁଖ୍ୟସଂପାଦକ: **ଶ୍ରୀ ରମାକାନ୍ତ ରାଉଳ**, ସାରଳା ଟ୍ରଷ୍ଟ, ଝଙ୍କଡ଼

ଆପଣଙ୍କ ଅନୁଦାନ ମୂଲ୍ୟ— **ମାତ୍ର ପାଞ୍ଚ ଟଙ୍କା**

ଶୁଭେଚ୍ଛୁ : **ଶ୍ରୀଯୁକ୍ତ ନିତ୍ୟାନନ୍ଦ ସାମନ୍ତରାୟ**

ସଂଯୋଜକ : **କ ବଶ୍ରୀ ମଧୁସୂଦନ ରାଉଳ**

ପ୍ରଚ୍ଛଦଶିଳ୍ପୀ : ୬**ଶ୍ୱଭୂତିଭୂଷଣ କାନୁନଗୋ,** ଆର୍ଟଆଣ୍ଡଫାଷ୍ଟ
ମହମ୍ମଦିଆ ବଜାର, କଟକ ।

ପରିଚାଳନା ସଂପାଦକ : **ଶ୍ରୀଯୁକ୍ତ କ୍ଷୀରୋଦଚନ୍ଦ୍ର ରାଉତ**

ମୁଖ୍ୟ କାର୍ଯ୍ୟାଳୟ : **ସାରଳାଙ୍କ ଟ୍ରଷ୍ଟ, ଝଙ୍କଡ ।**
ମୁ /ପୋ:ଅ:- କନକପୁର, ଜି:- କଟକ ।

ଅଙ୍ଗସଜ୍ଜା : **ବାଣୀରୂପ ପ୍ରେସ୍‌,** ଛତ୍ରୌଲ ।

ଯୋଗାଯୋଗ ଠିକଣା : **ସାରଳା ଦର୍ଶନ କାର୍ଯ୍ୟାଳୟ**
ଝଙ୍କଡ, ମୁଁ/ପୋ:ଅ- କନକପୁର, କଟକ ।

ବାର୍ଷିକ ଚାନ୍ଦା : ବାର୍ଷିକ— ଟ ୧୮-୦୦
ଛମାସିକ— ଟ ୧୦-୦୦
ପ୍ରତି ଖଣ୍ଡ— ଟ ୫-୦୦

ଦ୍ର: ଡ୍ର- ଡାକଖର୍ଚ୍ଚ— ସ୍ୱତନ୍ତ୍ର

# ଗବେଷଣା ଉପଦେଷ୍ଟା ମଣ୍ଡଳୀ

ଶ୍ରୀଯୁକ୍ତ କ୍ଷେତ୍ରମୋହନ ବଶ୍ୱାଳ, ସଭାପତି-ସାରଳା ଟ୍ରଷ୍ଟ ଝଙ୍କଡ଼

ଡଃ ବଂଶୀଧର ମହାନ୍ତି   ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି

ଶ୍ରୀଯୁକ୍ତ ପଠାଣୀ ପଟ୍ଟନାୟକ   ଡଃ ସାରଦାପ୍ରସାଦ ମହାନ୍ତି

ଝଙ୍କଡ଼ଶ୍ରୀ କାଳୀପ୍ରସନ୍ନ ପରିଜା   ଅଧ୍ୟାପକ ରତ୍ନାକର ପଣ୍ଡା

ଶ୍ରୀଯୁକ୍ତ ନାରାୟଣ ପ୍ରସାଦ ରାଉଳ

ସଭାପତି ସାରଳା ସାଂସ୍କୃତିକ ପରିଷଦ, କନକପୁର ।

# କୃତଜ୍ଞତା ଜ୍ଞାପନ

ସାରଳା ଦର୍ଶନର ପ୍ରକାଶ ଦିଗରେ ଯେଉଁ ସତ୍ୟାନୁରାଗୀ ଧର୍ମପ୍ରାଣ ବଦାନ୍ୟମାନ ବିଶିଷ୍ଟ ଭଦ୍ରବ୍ୟକ୍ତି ଗଣ ସାହାଯ୍ୟ ସହାନଭୂତି ଓ ଉଚ୍ଛନ ପ୍ରେରଣା ରହିଛି । ସେଇମାନଙ୍କ ନିକଟରେ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ସର୍ବଶକ୍ତିମୟୀ ମା ସାରଳାଙ୍କ ନିକଟରେ ତାଙ୍କର ଉଜ୍ଜ୍ୱଳଭବିଷ୍ୟତ ଓ ଦୀର୍ଘଜୀବନ କାମନା କରୁଅଛି ସେମାନେ ହେଲେ

ବାରିଷ୍ଟର ରଣଜିତ ମହାନ୍ତି: ଓଗରପଡ଼ା କଟକ  
ପ୍ରଫେସର ଗଙ୍ଗାଧର ବଳ: ରେଭେନ୍‌ସା କଲେଜ କଟକ  
ଅଧକ୍ଷ ଲକ୍ଷ୍ମଣ ପରିଡା: ଭଂଜନଗର ଗଞ୍ଜାମ  
ଆଧକ୍ଷ ହୃଦାନନ୍ଦ ରାୟ: ସାମନ୍ତଚନ୍ଦ୍ର ଶେଖର ମହାବିଦ୍ୟାଳୟ  
ଶ୍ରୀଯୁକ୍ତ ଅସିତକବି ରେଭେନ୍‌ସା କଲେଜ କଟକ  
ଶ୍ରୀଯୁକ୍ତ ଉଚ୍ଛବାନନ୍ଦ ସାମନ୍ତରାୟ ରାଜାବଗିଚା, କଟକ  
ଶ୍ରୀଯୁକ୍ତ ଆଦିକନ୍ଦ ସାମନ୍ତରାୟ ,,  
ଶ୍ରୀମତି ଶଶୀପ୍ରଭା ସାମନ୍ତରାୟ ,,  
ଶ୍ରୀଯୁକ୍ତ ପରମାନନ୍ଦ ଅଧିକାରୀ (ଯୋବ୍ରା) କଟକ  
ଶ୍ରୀଯୁକ୍ତ ଗଣେଷ ପରିଜା (ଭୁବନେଶ୍ୱର)  
ଶ୍ରୀମତି ଆରତି ମହାନ୍ତି ଥୋରିଆସାହି: କଟକ

ଶ୍ରୀଯୁକ୍ତ ଭାସ୍କରଚନ୍ଦ୍ର ହୋତା ଏକ୍ଜ୍ୟୁକୁଟିଭ ଇଞ୍ଜିନିୟର.
ଆର /ଆଣ୍ଡବି:ଜଗତସିଂହପୁର
" ପୂର୍ଣ୍ଣଚନ୍ଦ୍ର ସାମଲ. ଏକ୍ଜ୍ୟୁକୁଟିଭ ଇଞ୍ଜିନିୟର ଜନସ୍ୱାସ୍ଥ୍ୟ
ବିଭାଗ କଟକ
" କ୍ଷୀତିଶଚନ୍ଦ୍ର ପାଢ଼, ନଭ୍ଲାଇଫ ଏକ୍ସରେ, ମଙ୍ଗଳାବାଗ କଟକ
" ପ୍ରଫୁଲ୍ଲ କୁମାର ଦାଶ ଫ୍ରେଣ୍ଡ୍ସ କଲେଜ.ବଜ୍ରକବାଟି କଟକ
(ଉତ୍ତରକୂଳ) .
" ସନ୍ତୋଷ କୁମାର ନନ୍ଦ. ଗୋବିନ୍ଦପୁର
" ନିରଞ୍ଜନ ତାରଣିଆ. ଅରଡ଼ଙ୍ଗ କନକପୁର
" ଶ୍ରୀମତୀ ପ୍ରଭାବତୀ ରାୟ: କଟକ
ଶ୍ରୀଯୁକ୍ତ ରଜତକର
" ଗୌରୀ କୁମାର ବ୍ରହ୍ମା: ମାଉସୀମା ମନ୍ଦିର: ଭୁବନେଶ୍ୱର
ଅଧ୍ୟାପକ: ଦେବପ୍ରସାଦ ମହାନ୍ତି

* *

---

ସାରଳାଦାସ ସ୍ମୃତିପାଠାଗାର ଶାରଳା ମନ୍ଦିର (୨)ଯାଙ୍କୀବାସୀ ବସ ଚନ୍ଦନ ପୁଷ୍କରଣୀ ନବକରଣ ଓ ସୁରମ୍ୟ ପୁଷ୍ପୋଦ୍ୟାନ, ମାନ୍ୟବର ମନ୍ତ୍ରୀ **ଶ୍ରୀଯୁକ୍ତ ବସନ୍ତ କୁମାର ବିଶ୍ୱାଳଙ୍କ** ଦ୍ୱାରା ତା ୨୫ । ୭ । ୮୪ରିଖରେ ଉଦ୍ଘାଟିତ ହୋଇ ଯାଇଅଛି ॥



ଓଡ଼ିଆ ସାହିତ୍ୟ ସଂସ୍କୃତି କ୍ଷେତ୍ରରେ ଏକ ପୁନର୍ଜାଗରଣ ଓ ନବ ଚେତନା ସୃଷ୍ଟି କରିବା ଦିଗରେ ସାରଳା ଟ୍ରଷ୍ଟ ବହୁ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି ଏବଂ ତାର ସଫଳ ରୂପାୟନ ମଧ୍ୟ କରି ଆସିଛନ୍ତି । ସବୁ ଶ୍ରେଣୀର ସାହିତ୍ୟିକ ମାନଙ୍କର ମହାମିଳନ- ପୁଣି ତାର କେନ୍ଦ୍ର ବିନ୍ଦୁ (ସାରସ୍ୱତ ବାଣୀତୀର୍ଥ ଝଙ୍କଡ଼) ଠାରେ ଏକତ୍ରିତ କରି ଏକ ଯୁଗାନ୍ତକାରୀ ଗୌରବର୍ଜ୍ଜନ କରିପାରିଛନ୍ତି ।

ଗ୍ରାମ୍ୟାଞ୍ଚଳରୁ ନିରକ୍ଷରତା ଦୂରୀକରଣ, ମହାଭାରତୀୟ ସଂସ୍କୃତି ସାମାଜିକ ଆଦର୍ଶ ବୋଧର ବିକାଶ ଓ ଆଧ୍ୟାତ୍ମଦର୍ଶନର ଅଭ୍ୟୁତ୍ଥାନ ଦିଗରେ ଟ୍ରଷ୍ଟପକ୍ଷରୁ ବଳିଷ୍ଠ ପଦକ୍ଷେପ ମାନ ହାତକୁ ନିଆଯାଇଛି । ଏଥି ନିମନ୍ତେ ଗ୍ରାମେ ଗ୍ରାମେ ଶାରଳା ମହାଭାରତ ଓ ଭାରତୀୟ ଧର୍ମଗ୍ରନ୍ଥ ମାନ ପାଠ କରାଯାଉଛି ।

ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ଲାଗି ଗୁଣ୍ଡିଚାମୂଣ୍ଡା ଭଳି ତାର ଶକ୍ତି ସାମର୍ଥ୍ୟ ଅନୁସାରେ ଓଡ଼ିଶାର ସବୁଜିଲ୍ଲା ଏପରିକି ସବୁ ଅଞ୍ଚଳରେ ମଧ୍ୟ କାର୍ଯ୍ୟକରିବାକୁ ପଶ୍ଚାତପଦ ହୋଇନାହିଁ । ବିଭିନ୍ନ ଶିକ୍ଷାୟତନ ଓ ଜନସମାବେଶରେ ସାରଳା ସାହିତ୍ୟ ସଭା ଓ ସାରଳା ସମାରୋହ ପ୍ରଭୃତି ଅନୁଷ୍ଠିତ କରାଇବା ଦିଗରେ ମଧ୍ୟ ଅଭୂତ ପୂର୍ବ ସାଫଲ୍ୟ ଅର୍ଜ୍ଜନ କରିଛି ।

ବ୍ୟକ୍ତିକୁ ନେଇ ସମଷ୍ଟି ଏବଂ ସମଷ୍ଟି ବ୍ୟତିରେକ ବ୍ୟକ୍ତିର ବିକାଶ ସହଜସାଧ୍ୟ ହୋଇନଥାଏ । ବ୍ୟକ୍ତିର ରୁଚି ଭିନ୍ନ ତାଠୁ ଭିନ୍ନ ସାମାଜିକ ରୁଚି ଓ ସାହିତ୍ୟକ ରୁଚି । କିଏ କଣପାଇଁ ପଢେ ବା କାହିଁକି ପଢେ ତାର ସଠିକ ଖବର ରଖିବା କଷ୍ଟକର । ହୁଏତ ମୋଟା ମୋଟି ଭାବେ କହିହେବ ସରସ, ସୁନ୍ଦର, ମନଛୁଆଁ ବିବରଣୀ, କଳ୍ପନା ଚର୍ଚ୍ଚା ଭାବମୟତାର ସଠିକ ସମାବେଶ ହିଁ ବୋଧହୁଏ ଜନ ପ୍ରିୟତାର ଏକ ସୁଫଳ ମାପକାଠି ।

ଧର୍ମ ଦର୍ଶନରୁ, ନିତ ଦିନିଆ କଥା, ପୃଷ୍ଠି ହାସ ପରିହାସରୁ ପ୍ରହେଳି ସବୁକୁ ତ ଘେରି ରହିଛି ଆମ ସମାଜ ଏବଂ ବ୍ୟତିବ୍ୟସ୍ତ ମଣିଷର ମନ ।

ଆଗାମୀ ସଂଖ୍ୟାଟି ଏକ ଇଂରାଜୀ ବିଶେଷାଙ୍କ ରୂପେ ପ୍ରକାଶ ପାଇବ "ସାରଳା ସାହିତ୍ୟର ଆନ୍ତର୍ଜାତିକ ମୂଲ୍ୟାୟନ" ଓଡ଼ିଆ ଶିଳ୍ପୀର ଶିଳ୍ପକୃଷ୍ଟି, ଓଡ଼ିଶୀ ନୃତ୍ୟ ସଙ୍ଗୀତ, ଜଗନ୍ନାଥୀୟ ଧର୍ମ ଦର୍ଶନ ପ୍ରତ୍ୟେକର ଯେଉଁ ବୈଶିଷ୍ଟ୍ୟ ରହିଛି ଓ ଆନ୍ତର୍ଜାତିକ କ୍ଷେତ୍ରରେ ଯେପରି ସୁନାମ ଅର୍ଜନ କରି ପାରିଛି, ଓଡ଼ିଆ ଭାଷା ସାହିତ୍ୟ କାହିଁକି ? କଣ ପାଇଁ ! ଆଜି ଆନ୍ତର୍ଜାତିକ ସ୍ଥିତି ହାସଲ କରି ପାରି ନାହିଁ ? ଏହାର ମୂଖ୍ୟ କାରଣ ବୋଧହୁଏ ଆମ ଭାଷା ସାହିତ୍ୟ ଓ ଗ୍ରନ୍ଥମାନଙ୍କର ଯଥେଷ୍ଟ ଅନୁବାଦ ହୋଇପାରି ନାହିଁ । ଯେଥି ପାଇଁ ଏ ଧରଣର ପଦକ୍ଷେପ ନିଆଯାଉଛି । ଲେଖକ ଗବେଷକ ଓ ପାଠକ ପାଠିକା ମାନେ ଏ ଦିଗରେ ସହାନୁଭୂତି ପ୍ରଦର୍ଶନ କଲେ କାର୍ଯ୍ୟଟି ଅଚିର ସାଧନ ହୋଇ ପାରିବ ।

ଗ୍ରାମ୍ୟ ପ୍ରେସର ମୁଦ୍ରଣ ତ୍ରୁଟି ମାର୍ଜନା କରିପାରିଲେ ଶ୍ରମ ସାର୍ଥକ ହେବ । ସହୃଦୟ ପାଠକମାନଙ୍କ କ୍ରିୟା ପ୍ରତିକ୍ରିୟା ଅପେକ୍ଷାରେ ॥

॥**ସଂପାଦକ**॥

# ସୂଚୀପତ୍ର

| ବିଷୟ | | ପୃଷ୍ଠା |
|---|---|---|
| **(କବିତା)** | | |
| ଶ୍ରୀ ଦ୍ରମୁନି କୃତ ସାରଳାସ୍ତୁତି | | ୫୮ |
| ହେ କଳ୍ପଲତିକା – | ମଧୁସୂଦନ ରାଉଳ | ୬୦ |
| କିଏ ଏହି ମା | | ୬୧ |
| ବୁଢ଼ୀ ନଈ | ଅଧ୍ୟାପକ—ନାରାୟଣ ଚୌଧୁରୀ | ୬୨ |
| ସ୍ମୃତିତର୍ପଣ – | ଶିବପ୍ରସାଦ ନାୟକ | ୬୪ |
| କାମନାର ବିନାଶରେ— | କୃଷ୍ଣମିଶ୍ର | ୬୬ |
| କିଏ ତୁମେ | ପଦ୍ମଲୋଚନ ଜେନା | ୭୦ |
| ସ୍ମୃତି ତର୍ପଣ | | ୭୨ |
| ଶାରଳା ଭଜନ— | ନରେନ୍ଦ୍ର କୁମାର ସାହୁ | ୭୫ |
| ଆବାହାନୀ— | ପୀତାମ୍ବର ରାଉତ | ୭୬ |
| **(ଗଳ୍ପ)** | | |
| ମହାଭାରତୀୟ ଭାବନାରେ ସମସ୍ତେ ବଡ଼ | ଅଧ୍ୟାପକ ତାରେଶ୍ୱର ସାହୁ | ୭୯ |
| ଭାରତ ଯୁଦ୍ଧରେ ଭରଣିଆ ପକ୍ଷୀ | ଧୁରନ୍ଧର ମହାପାତ୍ର | ୮୩ |
| ଭଗବାନ ଓ ସଇତାନ | ବୈଷ୍ଣବ ଚରଣ ପଣ୍ଡା | ୮୮ |
| କଙ୍କାଗଡ଼ ଯୁଦ୍ଧ ଓ ମୂର୍ତ୍ତିଭଙ୍ଗା ବରଚଛ | ଦେବସ୍ନାନ ଦାସ | ୯୧ |
| ମୁଁ କିଏ | ବାବୁ ମହାରଣା | ୯୫ |

| ବିଷୟ | | ପୃଷ୍ଠା |
|---|---|---|
| କୋକୁଆ ଭୟ | ନବକିଶୋର ଦାସ | ୯୮ |
| ସହର ନଗର ପୁରପଲ୍ଲୀରେ ସାରଳା ସମାରୋହ | | ୧୦୫ |
| ଓଡ଼ିଶାର ଶିକ୍ଷାୟତନରେ ସାରଳା ସାହିତ୍ୟର ବ୍ୟାପକ ପ୍ରଚାର | | ୧୦୮ |
| ତିନୋଟି ଜାଣିବା କଥା | | ୧୦୯ |
| ମାତୃବାଣୀ | | ୧୧୧ |
| ନିବେଦନ କୁବେର ପୁତ୍ର ମାନଙ୍କୁ | | ୧୧୧ |
| ଆପଣ ଜାଣନ୍ତି କି ? | | ୧୧୩ |
| ସାରଳା ମନ୍ଦିରର ପରିକଳ୍ପନା | | ୧୧୪ |



ମନ୍ଦିର, ମଠ, ମସଜିଦ, ଗିର୍ଜା, ଚର୍ଚ୍ଚ, ମେଳା, ମହୋତ୍ସବ

ଓ

ବିବାହ ଆଦି ସମସ୍ତ ଉତ୍ସବରେ

**ସୁଗନ୍ଧମୟ ପରିବେଶ ସୃଷ୍ଟି କରେ**

ଏବଂ

**ଦେବକୀୟ ବାସନାରେ ଅପୂର୍ବ ପୁଲକ ଭରିଦିଏ**
**ଏକମାତ୍ର ନିର୍ଭର ଯୋଗ୍ୟ ଧୂପକାଠି**

# ଗୋଲକ ମାର୍କା

ଚଉଧୁରୀ ବଜାର କଟକ (ପରୀକ୍ଷା ପ୍ରାର୍ଥନୀୟ)

---

**ଅନୁସନ୍ଧାନ କରନ୍ତୁ**

ପୁରପଲ୍ଲୀର ସବୁଆଡ଼େ ଡ୍ରାମା, ଥିଏଟର, ନାଟକ, ପରିବେଷଣ କରିବାରେ ସିନ, ସିନେରୀ, ମେକାପ ଓ ଆଧୁନିକ ଡ୍ରେସ ଯୋଗାଇ ଥାଏ

ନିର୍ଭର ଯୋଗ୍ୟ—ଶବାଳୟ, ପରିବେଷକ, କୁଞ୍ଜବିହାରୀ

# ଚନ୍ଦ୍ରା ଅଚିହ୍ନା ଚିତ୍ରାଳୟ

ଝଙ୍କଡ଼ ଶାରଳାପୀଠ. ମୁ/ପୋ:— ଜନକପୁର କଟକ

ଡାକ୍ତର ରଣଜିତ ମହାନ୍ତ

ଓଗରପଡ଼ା
ଫୋ:ନ ନଂ- ୨୧୭୯୨

ଆମ ଓଡ଼ିଆ ସାହିତ୍ୟର ପୃଷ୍ଠପୋଷକ ମହାକବି ସାରଳା ଦାସଙ୍କ ସ୍ମୃତି ଆଜି ବଞ୍ଚି ରହିଛି କେବଳ କେତେକ ମୁଷ୍ଟିମେୟ କର୍ମଯୋଗିଙ୍କ ଉଦ୍ୟମରେ । ଓଡ଼ିଶାର ଅନେକ ପ୍ରତିଭା ମଉଳି ଯାଇଛି କାଳର କରାଳ ଚକ୍ରରେ । ଆଧୁନିକ ସଭ୍ୟତା ଭୁଲିଯାଉଛି ତାର ମୂଳ ସଂସ୍କୃତି ଓ ସାହିତ୍ୟ । କିନ୍ତୁ ସେହି ସାରଳାଦାସଙ୍କ ଯୋଗପୀଠରେ ମାତ୍ର କେତେକ ମୁଷ୍ଟିମେୟ ଲୋକଙ୍କ ନିରବଚ୍ଛିନ୍ନ ସାଧନା ବଳରେ ତିଷ୍ଠି ରହିଛି । ସେହି ମୁଷ୍ଟିମେୟ ସାଧକଙ୍କ ମଧ୍ୟରେ ଶ୍ରୀଯୁକ୍ତ ରମାକାନ୍ତ ରାଉଳ ଅନ୍ୟତମ ଏବଂ ତାଙ୍କର ନିଷ୍ଠାପର ସାହିତ୍ୟ ସାଧନା ବେଶ୍ ପ୍ରତିଫଳିତ ହୁଏ ତାଙ୍କର ରଚିତ ଏବଂ ପ୍ରକାଶିତ ପୁସ୍ତକରେ । ମୋର ଆଶା ଏ ଓଡ଼ିଆମାଟି ଯଦି ତାଙ୍କପରି ଆଉ କେତେକ ସନ୍ତାନ ପ୍ରସବ କରିବ । ତେବେ ଯାଇ ତାର ପୂର୍ବ ଗୌରବ ଫେରାଇ ଆଣିବ ॥

ସ୍ୱାକ୍ଷର ଶ୍ରୀଯୁକ୍ତ ରଣଜିତ୍ ମହାନ୍ତ
ତା୨୭ । ୯ । ୧୯୮୪

## ଶୁଭେଚ୍ଛା ବାର୍ତ୍ତା

ଡକ୍ଟର ହରେକୃଷ୍ଣ ମହତାବ୍

ଫୋନ୍—୫୨୦୦୨
ଏକାମ୍ର ନିବାସ
ଭୁବନେଶ୍ୱର ୭୫୧୦୦୨

ସାରଳା ଦର୍ଶନ, ତ୍ରୈମାସିକ ମୁଖପତ୍ରର ଦ୍ୱିତୀୟ ସଂଖ୍ୟା ପ୍ରକାଶ ପାଇବାକୁ ଯାଉଛି ଜାଣି ଆନନ୍ଦିତ ହେଲି । ଏହାର ପ୍ରଥମ ସଂଖ୍ୟାଟି ଭଲ ହୋଇଛି । ପତ୍ରିକାର ସର୍ବ ସଫଳତା କାମନା କରେ । ଇତି ।

ସ୍ୱାକ୍ଷର— ହରେକୃଷ୍ଣ ମହତାବ

ଶ୍ରୀ ରମାକାନ୍ତ ରାଉତ
ସଂପାଦକ, ସାରଳା ଦର୍ଶନ ।

# ସାରଳାଦର୍ଶନରଏକ ସମୀକ୍ଷା

ପ୍ରକାଶନ— ତା । ୧ । ୧ । ୮୪ ଖ୍ରୀ (ନବବର୍ଷ)

## ସାରଳା ଦର୍ଶନ

ସାରଳା ବିଶେଷାଙ୍କ ରୂପେ ପ୍ରକାଶିତ ପତ୍ରିକାଟିର ପ୍ରଥମ ବର୍ଷ ପ୍ରଥମ ସଂଖ୍ୟା ଅକ୍ଟୋବର —ଡିସେମ୍ବର ୧୯୮୩ ଦେଖିଲେ ଜଣାଯାଏ, ଏହାକୁ ଏକ ପତ୍ରିକା ପାଠକ ଓ ଗବେଷକଙ୍କ ଦ୍ୱାରା— ପ୍ରଶଂସିତ ଥିଲା । ଆଦିକବି ଶାରଳା ଦାସଙ୍କ ଜୀବନୀ ଓ ସାହିତ୍ୟ ସମ୍ପର୍କରେ ଓଡ଼ିଶାରେ ଜାଗ୍ରତି, ସର୍ବସ୍ତରରୁ ପ୍ରବଳ ଉତ୍ସାହ ସୃଷ୍ଟି କରିବା ଦିଗରେ ଭବିଷ୍ୟତରେ ପତ୍ରିକାଟି ସହାୟକ ହୋଇପାରିବ । ସମ୍ପାଦକ ରମାକାନ୍ତ ରାଉତ ଅନେକଙ୍କ ଏବଂ ସଂଖ୍ୟାଟିରେ ବିଭିନ୍ନ ବିଷୟରେ ବହୁ ଲେଖା ଲେଖିଥିବା ଲକ୍ଷଣୀୟ । ସାରଳା ଦାସଙ୍କ ଜୀବନୀ ସହିତ ବହୁ ସତ୍ୟ ଓ କିମ୍ବଦନ୍ତୀ ଜଡ଼ିତ । ଆଧୁନିକ ଗବେଷକମାନେ ବିଭିନ୍ନ ଦିଗରୁ ସେ ସବୁ ତଥ୍ୟ ଉନ୍ମୋଚିତ କରିବାରେ ଲାଗିଛନ୍ତି । ସୁତରାଂ 'ଶାରଳାଦର୍ଶନ'ରେ ବିଭିନ୍ନ ଧର୍ମୀ ଭିତ୍ତି କୋଟିର ଲେଖାର ସମାବେଶ ହେଲେ ପ୍ରତ୍ୟେକ ଓଡ଼ିଆ ଘରେ ଏହା ସ୍ଥାନ ପାଇବ ।

ଯୋଗାଯୋଗ ଶାରଳାଟ୍ରଷ୍ଟ, ଝଙ୍କଡ଼
ପୋ— କନକପୁର, କଟକ
ମୂଲ୍ୟ ପାଞ୍ଚଟଙ୍କା

## ଶୁଭେଚ୍ଛାବାର୍ତ୍ତା

ଡଃ ମନ୍ମଥ ନାଥ ଦାସ
କୁଳପତି

ଉତ୍କଳ ବିଶ୍ୱ ବିଦ୍ୟାଳୟ
ବାଣୀବିହାର
ଭୁବନେଶ୍ୱର ୭୫୧୦୦୪

ଶାରଳାଦର୍ଶନ ପୁସ୍ତକଟିରେ ଯେଉଁ ବିଦ୍ୱାନ ଓ ଜ୍ଞାନୀବ୍ୟକ୍ତିମାନେ ସେମାନଙ୍କର ସାରଗର୍ଭକ ଓ ସୁଚିନ୍ତିତ ବିଷୟବସ୍ତୁ ଉପରେ ଆଲୋକପାତ କରିଛନ୍ତି । ସେମାନଙ୍କର ଉଦ୍ୟମ ସର୍ବଥା ପ୍ରଶଂସନୀୟ । ଓଡ଼ିଶାର ଧର୍ମ, ଦର୍ଶନ ଓ ସଂସ୍କୃତି ପ୍ରତି ଏପରି ସଂକଳନ ଏକ ସୁନ୍ଦର ଅବଦାନ ରୂପେ ବିବେଚିତ ହେବ । ଓଡ଼ିଆ ଜାତିର ଅନ୍ତର୍ନିହିତ ମହତ୍ତ୍ୱ ଏହିପରି ସାହିତ୍ୟ ସୃଷ୍ଟିରେହିଁ ପରିସ୍ଫୁଟ ହୋଇପାରେ । ସମ୍ପାଦକ ଶ୍ରୀଯୁକ୍ତ ରମାକାନ୍ତ ରାଉଳଙ୍କ ସାଧନା ଭବିଷ୍ୟତରେ ଅଧିକତର ସାଫଲ୍ୟ ଲାଭକରୁ । ଏହାହିଁ ପ୍ରାର୍ଥନା ।

**ମନ୍ମଥ ନାଥ ଦାସ**
କୁଳପତି
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର
ଭୁବନେଶ୍ୱର

## ଶୁଭେଚ୍ଛାବାର୍ତ୍ତା

### ପ୍ରଫେସର ଡଃ ବଂଶୀଧର ମହାନ୍ତି

'ସାରଳା ଦର୍ଶନ'ର ଦ୍ୱିତୀୟ ସଂସ୍କରଣ ହେବା ଅତି ଆନନ୍ଦର ବିଷୟ । ପତ୍ରିକାରେ 'ସାରଳା ସାହିତ୍ୟ ସହିତ ଓଡ଼ିଶାର ପ୍ରାଚୀନ ଧର୍ମ ପରମ୍ପରା, ଓଡ଼ିଶାର ସଂସ୍କୃତି ସମ୍ବନ୍ଧରେ ଆଲୋଚନା ହେଲେ ଆଦର ବଢ଼ନ୍ତା । ମୁଁ ଏହି ପତ୍ରିକାର ଉନ୍ନତି କାମନା କରୁଅଛି ।


ବଂଶୀଧର ମହାନ୍ତି
ପ୍ରଫେସର ଓଡ଼ିଆଭାଷା ସାହିତ୍ୟ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର

# ଓଡ଼ିଶା ସାହିତ୍ୟ ଏକାଡେ଼ମୀ


ସୁରେନ୍ଦ୍ର ମହାନ୍ତି
ସଭାପତି
ଓଡ଼ିଶା ସାହିତ୍ୟ ଏକାଡେ଼ମୀ
ଭୁବନେଶ୍ୱର ୭୫୧୦୧୪


"ଶାରଳା ଦର୍ଶନ" ପୁସ୍ତିକାଟି ଦେଖିଲି । ଶାରଳା-ଦାସଙ୍କ ମହାଭାରତ ସଂପର୍କରେ ଏଥିରେ ଯେଉଁ କେତେକ ପ୍ରାଥମିକ ତଥ୍ୟ ଉପସ୍ଥାପିତ ହୋଇଅଛି ତାହା ନିଶ୍ଚୟ ଶାରଳା-ଦାସ ଓ ତାଙ୍କ କୃତି ସମ୍ପର୍କରେ ଜନସାଧାରଣଙ୍କୁ ଅଧିକରୁ ଅଧିକ ଆକୃଷ୍ଟ କରିବ । ଏଥିପାଇଁ ସଂକଳକ ଓ ଉଦ୍ୟୋକ୍ତା ମାନଙ୍କର ଉଦ୍ୟମ ସର୍ବଥା ପ୍ରଶଂସନୀୟ ।

'ଶାରଳା ମହାଭାରତ ଓଡ଼ିଆ ସଂସ୍କୃତି ଓଡ଼ିଶାର ଇତିହାସ ଓ ଜନଜୀବନ ସଂପର୍କରେ ଏକ ବିଶ୍ୱ-କୋଷ କହିଲେ ଅତ୍ୟୁକ୍ତି ହେବନାହିଁ । ପୁଣି ଶାରଳାଦାସ ଓଡ଼ିଆ ଜାତିର ଅବଚେତନ ଓ ମୂଲ୍ୟବୋଧକୁ ଯେପରି ଗଭୀର ଭାବରେ ପ୍ରଭାବିତ କରିଛନ୍ତି ତାହା ବାସ୍ତବିକ ବିସ୍ମୟୋଦ୍ଦୀପକ, କିନ୍ତୁ ଶାରଳା ଦାସଙ୍କ ସଂପର୍କରେ ଏପର୍ଯ୍ୟନ୍ତ ଗଭୀରତର ଆଲୋଚନା ହୋଇନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ବସ୍ତୁତଃ ପଣ୍ଡିତ ଗୋପୀନାଥ ନନ୍ଦଙ୍କ 'ଭାରତ ଦର୍ପଣ' ପରେ ଏ ଦିଗରେ ଯେତେ ସବୁ ଉଦ୍ୟମ ହୋଇଛି ସେ ସବୁ ବାହ୍ୟ ।

ପ୍ରଥମତଃ ଶାରଳାଦାସଙ୍କ ଐତିହାସିକ କାଳ ସାଧାରଣ, ବିଶ୍ୱାସରେ ସେ ସୂର୍ଯ୍ୟବଂଶୀ ସମ୍ରାଟ କପିଳେନ୍ଦ୍ର ଦେବଙ୍କ ସମକାଳୀନ ଥିଲେ ବୋଲି ଏକ ଧାରଣା ସୁପ୍ରତିଷ୍ଠିତ । ମାତ୍ର ଏବେ କେତେକ ଐତିହାସିକ ତଥ୍ୟ ଲୋକ ଲୋଚନକୁ ଆସିଛି ଯେଉଁଥିରୁ ଶାରଳା-ଦାସଙ୍କୁ ପଞ୍ଚ ଦଶ ଶତାବ୍ଦୀର ପୂର୍ବକାଳୀନ ବୋଲି ଅନୁମାନ କରିବା ଅସମ୍ଭବ ହେବନାହିଁ ।

ଶାରଳା-ଦାସଙ୍କ ସଂପର୍କରେ ଗଭୀରତର ଅଲୋଚନା ଓ ଗବେଷଣା ଦିଗରେ ଶାରଳାଟ୍ରଷ୍ଟ ଅଧିକ ଦୃଷ୍ଟି ଦେଲେ ଓଡ଼ିଆ ଜାତି ଓ ସଂସ୍କୃତି ମହୋପକାର ସାଧନ କରିବେ ।

ସ୍ୱାକ୍ଷର ସୁରେନ୍ଦ୍ର ମହାନ୍ତି



ଯୁଗେ ଯୁଗେ ଜାଜ୍ୱଲ୍ୟମାନ ରହିବ ତାଙ୍କ ନାମ
ଆଉ ମଧ୍ୟ ତାଙ୍କର କାମ ?

ଲୋକ ପ୍ରିୟତାର ଆଉ ଏକ ନମୁନା .....

ସରକାର ମଧ୍ୟ ସାରଳା ଇତିହାସରେ ଉଜ୍ଜ୍ୱଳମୟ ଅଧ୍ୟାୟ
ସୃଷ୍ଟି କଲେ ପିଣ୍ଡଶାଳ ନବନିର୍ମାଣ

ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ଓ

ତାଙ୍କର କର୍ମଦକ୍ଷ ମନ୍ତ୍ରୀ ଶ୍ରୀଯୁକ୍ତ ବସନ୍ତ କୁମାର ବିଶ୍ୱାଳ ।।

ତାଙ୍କର ହସ୍ତକ୍ଷେପ ଫଳରେ ଭଗତ ତିନିବର୍ଷ ମଧ୍ୟରେ ଝଙ୍କଡ ଶାରଳାପୀଠର
ଉନ୍ନୟନ କାର୍ଯ୍ୟ ? ? ? ? ? ? ? ?

❊ ଶାରଳା ମନ୍ଦିର ତରଫରୁ ଶାରଳାପୀଠରୁ ଶ୍ରୀକ୍ଷେତ୍ରକୁ ଯାତ୍ରୀବାହୀ ବସ "ଠାକୁରାଣୀ" ପ୍ରଚଳନ ।

❊ ଦୂରଗତ ତୀର୍ଥଯାତ୍ରୀ ମାନଙ୍କ ସୁବିଧା ନିମନ୍ତେ "କରୁଣାନିବାସ ଧର୍ମଶାଳା" ଉଦ୍‌ଘାଟନ ।

❊ ଶାରଳା ମନ୍ଦିର ତରଫରୁ "ମା ଶାରଳା ସ୍ୱାସ୍ଥ୍ୟ କେନ୍ଦ୍ର" ଉଦ୍‌ଘାଟନ୍

❊ ମନ୍ଦିର ବେଢ଼ାରେ "ଜଳଭଣ୍ଡାର" ସ୍ଥାପନ ଓ 'ଉଜ୍ଜ୍ୱଳ ଆଲୋକ ସଜ୍ଜା'

❊ 'ସାରଳାଷ୍ଟମୀ ଆନୁକୂଲ୍ୟରେ ପୁରାଣପାଠ ।'

❊ ପ୍ରବଳ ଜନସମାଗମରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା ନିମନ୍ତେ 'କନକପୁର ପୋଲିସ ଆଉଟପୋଷ୍ଟ'

❊ ଶାରଳା ଠାକୁରାଣୀଙ୍କ 'ଚନ୍ଦନ ପୋଖରୀର ନବୀକରଣ'

❊ ଶାରଳାପୀଠରୁ ଜଗତ୍‌ସିଂହପୁରକୁ ସଂଯୋଗକାରୀ ପଥରେ 'ହଂସୁଆ ସେତୁ ନିର୍ମାଣ ଓ ବସ ପ୍ରଚଳନ ।'

❊ 'ଶାରଳା ସମାବେଶର' ସଫଳ ରୂପାୟନ ।

❊ ଶହେ ବର୍ଷର ପ୍ରାଚୀନ ଜ୍ଞାନପୀଠ 'ସାରଦା ଏକାଡେମୀ ହାଇସ୍କୁଲ'ର ପୁନର୍ନିର୍ମାଣ

ଓ

❊ ଶାରଳାପୀଠରେ ଉଚ୍ଚ ପଦସ୍ଥ ସରକାରୀ ଅଫିସର ଓ ଭଦ୍ରବ୍ୟକ୍ତି ମାନଙ୍କ ରହିବା ନିମନ୍ତେ, ପୂର୍ତ୍ତ ଓ କୋଠାବାଡ଼ି ବିଭାଗ ତରଫରୁ 'କନକପୁର ଡାକବଙ୍ଗଳା" ଉଦ୍‌ଘାଟନ ।

ବି.ଦ୍ର.— ଏତଦ୍‌ବ୍ୟତୀତ ବହୁ ଜନହିତକର କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଏ ନାତିର ସାରସ୍ୱତ ପୀଠ ଝଙ୍କଡ଼ର ପାରମ୍ପରିକ ସଂସ୍କୃତିର ଅଭ୍ୟୁତ୍ଥାନ ଓ ଐତିହାସିକ ଝଙ୍କଡ଼ର ଲୁପ୍ତ ଗୌରବର ପୁନରୁଦ୍ଧାର କରି ଉତ୍କଳ ଭାରତୀଙ୍କର ଗର୍ବ ଓ ଗୌରବକୁ ବୃଦ୍ଧି କରିଅଛନ୍ତି ।



# ଶ୍ରୀ ଶ୍ରୀ ସାରଳା ଠାକୁରାଣୀଙ୍କ ଧ୍ୟାନମନ୍ତ୍ରଃ
# ମୂର୍ତ୍ତିଚିନ୍ତା ଓ ଶାରଦାଭୂଜଙ୍ଗ ସ୍ତୋତ୍ର

ଧ୍ୟାନମନ୍ତ୍ର ବା ମୂର୍ତ୍ତିଚିନ୍ତା—

ଓଁ ଅଷ୍ଟଭୂଜା ମହା ଦେବୀ ମହିଷାସୁର ମର୍ଦ୍ଦିନୀ
ଶସ୍ତ୍ରାସ୍ତ୍ର ଧାରିଣୀ ବାଣୀ କନକପୁର ବାସିନୀ
ବିଭ୍ରତି ଖଡ଼୍ଗ ଶୂଳୌଚ ବାଣଂ ତୋମର ମେବଚ
ସମାଢ଼୍ ଢାଲଂ ଧନୁଃ ଘଣ୍ଟା ଛିନ୍ନଂ ନୃମହିଷସ୍ୟଚ
ଇମାନ୍ୟସ୍ତାଣୀ ଶସ୍ତ୍ରାଣୀ ଊର୍ଦ୍ଧାଧୋ ଦକ୍ଷ ବାମୋୟୋ
ହସ୍ତେଷୁ ପ୍ରତିଶୋଭନ୍ତେ ସାରଳାୟାସ୍ତୁ ସର୍ବଦା

ମୌଳିକ ଧ୍ୟାନ ମନ୍ତ୍ର—

ଓଁ ସିଂହସ୍ୟା ପରିତରୁ ଦକ୍ଷ ଚରଣାଂ ବିଭ୍ରାଜ ମାନାଂ ଶୁଭାଂ
ବାଣୀ ପୁସ୍ତକ, ଖଡ଼୍ଗ ଶୂଳମ୍‌ବର୍ଣ୍ଣଂ ଦକ୍ଷୈ କରାମ୍ଭୋ ରୁହୈଃ
ଘଣ୍ଟା କାର୍ମୁକ ଚର୍ଚ୍ଚଶାସୁର କର୍ତ୍ତନ୍ ବାମୈଃ କରୈ ବିଭ୍ରତ୍ତୀଂ
ଚିରନ୍ତ୍ର ମହିଷ ନମାମି ବରଦାଂ ବାକ୍‌ଦେବତାଂ ଶାରଦାମ୍

ସାଧାରଣ ଅର୍ଥ— ଯେଉଁ ମହାଦେବୀଙ୍କର ଦକ୍ଷିଣ ପାଦ ସିଂହର ଶିର ଉପରେ ଶୋଭା ପାଉଅଛି, ଯେଉଁ ଦେବୀ ଦକ୍ଷିଣକର ମାନଙ୍କରେ କ୍ରମଶ ବାଣୀ, ପୁସ୍ତକ, ଊର୍ଦ୍ଧରେ ଖଡ଼୍ଗ ଓ ଶୂଳ ଦ୍ୱାରା ମହିଷାର ବକ୍ଷକୁ ବିଦୀର୍ଣ୍ଣ କରି ଅଛନ୍ତି ବାମକର ମାନଙ୍କରେ ଘଣ୍ଟା, ଢ଼ାଲ, ଧନୁ ଓ ଶେଷ ହାତରେ ମହିଷାର ଶିର ଶୋଭିତ । ସେହି ମହିଷା ମର୍ଦ୍ଦିନୀ ବର ଦାୟିନୀ, ବାକ୍‌ଦେବୀ ସାରଦାଙ୍କୁ ମୁଁ ନମସ୍କାର କରୁଅଛି ।

## ଆୟୁଧମାନଙ୍କର ତାତ୍ପର୍ଯ୍ୟ ଓ ମୂର୍ତ୍ତିତତ୍ତ୍ୱର ବିଶେଷତ୍ୱ :—

ଚୈତନ୍ୟମୟୀ ମା' ଶାରଳା ସିଂହ ଶିର ଉପରେ ଏକ ପାଦରେ ଦଣ୍ଡାୟମାନା । ଅର୍ଥାତ୍ ବାହନ ସହିତ ନିଜକୁ ଜାଗ୍ରତ କରିଅଛନ୍ତି । ସନ୍ତାନ ବତ୍ସଳା ଜନନୀ ଶାରଳାଙ୍କୁ ଯେକୌଣସି ବିପଦରେ ପଡ଼ି ସ୍ମରଣ କରିବା ମାତ୍ରେ, ସିଂହ ଉପରେ ଉପବେଶନ କରି ସିଂହକୁ ଦ୍ରୁତ ବେଗରେ ଆମ ନିକଟକୁ ଛୁଟାଇ ଦିଅନ୍ତି ଓ ଆମକୁ ସକଳ ପ୍ରକାର ଭବଭୟରୁ ଅନାୟାସରେ ଉଦ୍ଧାର କରିଥାଆନ୍ତି । ସେହି ତ୍ରୈଲୋକ ରକ୍ଷା କାରିଣୀଙ୍କର ଅଭୟ ପାଦପଦ୍ମରେ ଯାହାର ଲୟ ରହେ ସେ ଚତୁଃବର୍ଗର ଫଳ ଲଭ କରିଥାଏ ।

"ଧର୍ମ ଅର୍ଥ, କାମ ମୋକ୍ଷ ଏ ଚତୁଃବର୍ଗର ଫଳ
ଧନ ଜନ ଇନ୍ଦ୍ର ଆସନ ସବୁ ମା' ପାଦତଳ ॥"

**ବୀଣା** :—ବୀଣାର ଝଙ୍କାର ତୋଳି ଆହ୍ଲାଦିନୀ ଶକ୍ତିର ଜାଗରଣ କରୁଅଛନ୍ତି ଓ ଗାନ୍ଧର୍ବ ବିଦ୍ୟାପ୍ରତି ଆଶୀର୍ବାଦ କରୁଥିବାରୁ, ଓଡ଼ିଶାର ସମସ୍ତ ବାଦ୍ୟକାର, ସଙ୍ଗୀତଜ୍ଞ, କଣ୍ଠ ଶିଳ୍ପୀ, ଚିତ୍ର ଶିଳ୍ପୀ, ଅଭିନେତା ଓ ପାଲାଗାୟକମାନେ ନାଦ ବ୍ରହ୍ମମୟୀ ଶାରଳା ଦେବୀଙ୍କର ଚରଣାଶ୍ରିତ ହୋଇ କଳା ପରିବେଷଣରେ ଅପୂର୍ବ କୃତିତ୍ୱ ଅର୍ଜ୍ଜନ କରିଥାଆନ୍ତି ।

"ଝଙ୍କାଡ଼ ବାସିନୀ ଦେବୀ ମା ଶାରଳା
ଯା ବିପଞ୍ଚିତାନ ସୃଜେ କାବ୍ୟ କଳା ॥"

**ପୁସ୍ତକ** :— ପୁସ୍ତକ ଧାରଣ କରି ଜ୍ଞାନଦାୟିନୀ ବିଦ୍ୟା ପ୍ରଦାନ କରୁଥିବାରୁ ଓଡ଼ିଶାର ସମସ୍ତ କବି, ଲେଖକ, ଗାଳ୍ପିକ, ନାଟ୍ୟକାର, ଐତିହାସିକ, ଗବେଷକ, ଶିକ୍ଷକ, ଅଧ୍ୟାପକ, ସାହିତ୍ୟିକ, ସାମ୍ବାଦିକ ଓ ଗ୍ରନ୍ଥ ଗ୍ରନ୍ଥୀମାନେ **ଉତ୍କଳ ଭାରତୀ ଶାରଳା ଠାକୁରାଣୀ**ଙ୍କର ଯୋଗ୍ୟ ସନ୍ତାନ ଓ ପରମ ଭକ୍ତ ଅଟନ୍ତି । କାବ୍ୟକାର

ମାନେ ଗ୍ରନ୍ଥ ରଚନା ପ୍ରାରମ୍ଭରେ **ବାଗ୍‌ଦେବୀ ଶାରଳା**ଙ୍କର କୃପାଭିକ୍ଷା କରି ଥାଆନ୍ତି ଓ ତାଙ୍କର ବନ୍ଦନା ବି କରିଥାଆନ୍ତି ।

"ଶଙ୍କଟ ତାରିଣୀ ଝଙ୍କଡପୁର ବନ୍ଦି ଶାରଳା
ଭକ୍ତଙ୍କୁ ବିକଟ କାକଟପୁରେ ମହା ମଙ୍ଗଳା ॥"

( କବିବର **ରାଧାନାଥ ରାୟ** )

**ଖଡ୍‌ଗ :— ମଙ୍ଗଳମୟୀ ମା ଶାରଳା** ଖଡ୍‌ଗ ଦ୍ୱାରା ଜଗତର ଅଶେଷ ଦୁର୍ଗତିକୁ ଖଣ୍ଡନ କରୁଅଛନ୍ତି ଏବଂ ଏହି ଜ୍ଞାନ ଅସି ଦ୍ୱାରା ଅଜ୍ଞାନତା ବା ଜଡତାର ଅନ୍ଧକାରକୁ ବିନାଶ କରି, ଦିବ୍ୟ ଆଲୋକର ପଥକୁ ଉନ୍ମୋଚନ—କରୁଅଛନ୍ତି ।

"ଅଜ୍ଞାନ ମହିଷାସୁର ବିନାଶ ନମିତ୍ତ
ଝଲସଇ ତବ କରେ ଜ୍ଞାନାସି ଶାଣିତ ॥"

**ଶୂଳ** :— ଶୂଳକୁ ମହିଷାସୁରର ବକ୍ଷ ଦେଶରେ ବିଦଗ୍ଧକରି, ଆମର ମୋହ ବାସନାକୁ ଅନାୟାସରେ ବିନାଶ କରୁଅଛନ୍ତି ।

**ଢାଲ** :—ଢ଼ାଲ ଧାରଣ କରି ଆମର ସକଳ ବିପଦର ପଥ ଓ ଶତ୍ରୁମାନଙ୍କର ଗତି ପଥକୁ ଅବରୋଧ କରୁଅଛନ୍ତି ।

**ଘଣ୍ଟା** :—ଘଣ୍ଟା ନାଦକରି ଦୁଷ୍ଟ ଅସୁର ଓ ପାପାତ୍ମାମାନଙ୍କୁ ସତର୍କ କରିବା ସଂଗେ ସଂଗେ ସୁପ୍ତ ଭକ୍ତ ଓ ସନ୍ଥମାନଙ୍କୁ ଉଠିବା ପାଇଁ ଓ ଜାଗିବା ପାଇଁ ଚେତନଶୀଳ କରିଦେଉଅଛନ୍ତି । ପ୍ରଳୟାନ୍ତ କାଳରେ, ସାଧୁ, ସନ୍ଥ, ଓ ଭକ୍ତ ଜନ ମାନଙ୍କୁ ସେହି ମହାଘଣ୍ଟ ଢୋଡ଼ାଇ ରକ୍ଷା କରୁଅଛନ୍ତି ।

**ଧନୁ** :— **ସାରଙ୍ଗ ଧାରିଣୀ ଶାରଦା** ଧନୁ ଧାରଣକରି ଆମକୁ **କର୍ମବୀର** ଓ **କର୍ତ୍ତବ୍ୟ-ପରାୟଣ**ହେବାପାଇଁ ଅନୁପ୍ରାଣିତ କରୁଅଛନ୍ତି ଏବଂ **ସୌଭାଗ୍ୟମୟୀ ମା ଶାରଳା** ଆମକୁ ଉଜ୍ଜ୍ୱଳ ଭବିଷ୍ୟତ ଓ ସୌଭାଗ୍ୟ ପ୍ରଦାନ କରୁଅଛନ୍ତି ।

**ଅସୁର ଶିର:**— ଶେଷ ହାତିରେ ଅସୁରର କେଶ ଧାରଣକରି **ଦୈତ୍ୟ ଦଳନୀ ମା ଶାରଳା** ଆମର ସମସ୍ତ ଆସୁରିକ ଭାବକୁ ବିନାଶ କରିବା ସଙ୍ଗେ ସଙ୍ଗେ, ଜଗତର ସମସ୍ତ ପ୍ରକାର ମୁକ୍ତି ପ୍ରଦାନ କରୁଅଛନ୍ତି ।

ଓଡ଼ିଶାରେ କାହିଁକି ମାତ୍ର ଭାରତ ବର୍ଷରେ ଏପରି କୌଣସି ଦେବୀ ନାହାନ୍ତି ଯେ ବୀଣା, ପୁସ୍ତକ ଧାରଣ ସେହି ପୁଣି ମହିଷ ମର୍ଦ୍ଦିନୀ । ଏହା କେବଳ ଶାରଳା ମୂର୍ତ୍ତିରେ ସମ୍ଭବ ହୋଇଛି । ଦେବୀ ଶାରଳା ବୀଣା ପୁସ୍ତକ ଧରିଥିବାରୁ ସେ ସରସ୍ୱତୀ, ଖଡ୍ଗ ଶୂଳ ଧାରଣ କରିଥିବାରୁ, କାଳୀ ଓ ଘଣ୍ଟା ଧନୁ ଓ ଶଙ୍ଖ ଧାରଣ କରିଥିବାରୁ ସେ ଲକ୍ଷ୍ମୀ । ତୁଳସୀ ଓ ବିଲ୍ୱଦଳ ତାଙ୍କ ନୈବେଦ୍ୟରେ ଏକତ୍ର ଅର୍ପଣ କରାଯାଉଥିବାରୁ ସେ ଏକାଧାରରେ ପରମ ବୈଷ୍ଣବୀ ଓ ନିତ୍ୟ ଚଣ୍ଡୀ । ସେହି ସର୍ବ ଶକ୍ତିମୟୀ **ମା ଶାରଳା**ଙ୍କ ନାମ କରଣରେ ଏକ ବିବାଦ ମାନ କଥା ଶୁଣାଯାଇଥାଏ । ନିମ୍ନରେ ତାହାର ସମାଧାନ ଦିଗରେ କେତୋଟି ଉଲ୍ଲେଖ କରାଗଲା ।

**ନାମକରଣର ଯଥାର୍ଥତା :—**

୧ । ସାରବସ୍ତୁ (ବିଦ୍ୟା)ଦାନ କରୁଥିବାରୁ—ସାରଦା ।

୨ । ଶରତ ଋତୁରେ ଶ୍ରୀରାମ ପୂଜିତା ଯୋଗୁଁ—ଶାରଦା ।

୩ । ଭଗବାନ ପର୍ଶୁରାମଙ୍କ ଦ୍ୱାରା ଶରମୂନରେ ହେଉ ବା ଆଦ୍ୟାଶକ୍ତିର ଶରମୂନରେ ଅର୍ଚ୍ଚିତା ଓ ଆବିଷ୍କୃତା ହୋଇଥିବାରୁ—ଶାରଳା ।

୪ । ଶାରୋଳ ନାମକ ଗ୍ରାମର ଅଧିଷ୍ଠାତ୍ରୀ ଦେବୀ— ସାରଳା ।

୫ । ଯାହାର ଦର୍ଶନ ମାତ୍ରେ ସ୍ୱତଃ ଭକ୍ତି ଭାବର ଉଦ୍ରେକ ହୁଏ । ଅର୍ଥାତ୍ ସରଳ ଭାବର ବିଗ୍ରହ ହୋଇଥିବାରୁ—ସାରଳା । ସୁତରାଂ ଝଙ୍କଡ଼ ଶାରଳାଙ୍କ ପାଇଁ ଉଭୟ 'ଶ' 'ସ' ସାରଦା ଓ ଶାରଳା ପ୍ରଯୁଜ୍ୟ ହୋଇଥାଏ ।

**"ସାରଦା ସର୍ବକାଳେ"**

ସେହି ସର୍ବଶକ୍ତିମୟୀ ମା ସାରଳା ପ୍ରିୟ ପାଠକମାନଙ୍କୁ ସଦା ସର୍ବଦା ସର୍ବବିଧ ମଙ୍ଗଳ ବିଧାନ କରନ୍ତୁ ।

# ଶ୍ରୀଶ୍ରୀ ସାରଦା ଭୁଜଙ୍ଗ ସ୍ତୋତ୍ରମ୍

ସବୃକ୍ଷୋଜ କୁମ୍ଭାଂ ସୁଧାପୂର୍ଣ୍ଣକୁମ୍ଭାଂ ପ୍ରସାଦାବଲମ୍ବାଂ ପ୍ରପୁଣ୍ୟା ବଲମ୍ବାମ୍
ସଦାସେନ୍ଦୁବିମ୍ବାଂ ସଦାନୋଷ୍ଠ ବିମ୍ବାଂ ଭଜେ ଶାରଦାମ୍ବା ମଜସ୍ରଂ ମଦମ୍ବାମ୍ । ୧ ।

କାଠାକ୍ଷେଦୟାର୍ଦ୍ରାଂ କରେଜ୍ଞାନମୁଦ୍ରାଂ କଳାଭିର୍ବିନିଦ୍ରାଂ କଳାପୈଃ ସୁଭଦ୍ରାଂ
ପୁରସ୍ତ୍ରୀଂ ବିନିଦ୍ରାଂ ପୁରସ୍ତୁଙ୍ଗଭଦ୍ରାଂ ଭଜେ ଶାରଦାମ୍ବା ମଜଂସ୍ର ମଦମ୍ବାମ୍ । ୨ ।

ଲଲାଠାଙ୍କପାଲଂ ଲସଦଗାନଲୋଲଂ ସ୍ୱଭକ୍ତୈ୍ୟ କପାଳଂ ଯଶଃ ଶ୍ରୀକପୋଳାଂ
କରେତ୍ୱକ୍ଷମାଲାଂ କନତ୍ପ୍ରତ୍ନଲୋଲାଂ ଭଜେଶାରଦାମ୍ବା ମଜସ୍ରଂ ମଦମ୍ବାମ୍ । ୩ ।

ସୁସୀମନ୍ତବେଣୀଂ ଦୃଶାନର୍ଜିତୈଣୀଂ ରମତ୍କୀରବାଣୀଂ ନମତ୍ ବଜ୍ରପାଣିମ୍
ସୁଧାମନ୍ଥରସ୍ୟାଂ ମୁଦାଚନ୍ତ୍ୟବେଣୀଂ ଭଜେ ଶାରଦାମ୍ବା ମଜସ୍ରଂମଦମ୍ବାମ୍ । ୪ ।

ସୁଶାନ୍ତାଂ ସୁଦେହାଂ ଦୃଗନ୍ତେ କଚାନ୍ତାଂ ଲସତ୍ ସଲ୍ଲତାଙ୍ଗୀ ମନନ୍ତା ମଚିନ୍ତ୍ୟାମ୍
ସ୍ମରେତ୍ତାପସୈଃ ସଙ୍ଗପୂର୍ବସ୍ଥିତା ତାଂ ଭଜେ ଶାରଦାମ୍ବା ମଜସ୍ରଂମଦମ୍ବାମ୍ । ୫ ।

କୁରଙ୍ଗେ, ତୁରଙ୍ଗେ ମୃଗେନ୍ଦ୍ରେ ଖଗେନ୍ଦ୍ରେ ମରାଳେ ମଦେଭେ ମହୋକ୍ଷେଧିରୂଢାମ୍
ମହତ୍ୟାଂ ନବମ୍ୟାଂ ସଦାସାମରୂପାଂ ଭଜେ ଶାରଦାମ୍ବା ମଜସ୍ରଂ ମଦମ୍ବାମ୍ । ୬

ଜ୍ୱଲଦବହ୍ନି କାନ୍ତ ଜଗନ୍ମୋହନାଙ୍ଗୀ ଭଜେମାନସାମ୍ଭୋଜ ସୁଭ୍ରାନ୍ତ ଭୃଙ୍ଗୀମ୍
ନିଜସ୍ତୋତ୍ର ସଙ୍ଗୀତ ନୃତ୍ୟପ୍ରଭଙ୍ଗୀ ଭଜେ ଶାରଦାମ୍ବା ମଜସ୍ରଂମଦମ୍ବାମ୍ । ୭ ।

ଭବାମ୍ଭୋଜ ନେତ୍ରାବ୍ଜ ସଂପୂଜ୍ୟମାନାଂ ଲସନ୍ମନ୍ଦହାସ ପ୍ରଭାବକ୍ତ୍ର ଚିହ୍ନା
ଚଳ ଚଞ୍ଚଳା ଚାରୁତାଠଙ୍କ କର୍ଣ୍ଣାଂ ଭଜେ ଶାରଦାମ୍ବା ମଜସ୍ରଂ ମଦମ୍ବାମ୍ । ୮ ।

ଇତି ଶ୍ରୀମଦ୍ ଶଙ୍କରାଚାର୍ଯ୍ୟଂ ବିରଚିତଂ ଶାରଦା ଭୁଜଙ୍ଗ ସ୍ତୋତ୍ରଂ ସଂପୂର୍ଣ୍ଣଂ ॥






# ଆଦିକବି ଶାରଳା ଦାସ

## ଶାରଳାପୀଠ ସବୁଦିନ ପାଇଁ ଓଡ଼ିଆଜାତି ପକ୍ଷରେ ଏକ ସାରସ୍ୱତ ତୀର୍ଥଭୂମି

**"ସେକ୍ସପିଅର ଯେପରି ପ୍ରତ୍ୟେକ ଇଂରେଜର ଗର୍ବ ଏବଂ ଗୌରବ, ସାରଳାଦାସ ସେହିପରି ପ୍ରତ୍ୟେକ ଓଡ଼ିଆର ଗର୍ବ ଏବଂ ଗୌରବ**

ବିଶ୍ୱବନ୍ଦିତ ସାହିତ୍ୟରଥୀ ସେକ୍ସପିୟର ଇଂଲଣ୍ଡର ଆଭୋନ୍ ନଦୀ କୂଳରେ ଷ୍ଟ୍ରାଟଫୋର୍ଡ଼ ନାମକ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ । ସେ ସ୍ଥାନଟି ପୃଥିବୀର ଏକ ସାରସ୍ୱତ ତୀର୍ଥରେ ପରିଣତ ହୋଇଛି । ପ୍ରତିବର୍ଷ ସେଠାରେ ସେକ୍ସପିୟର ମହୋତ୍ସବ ପାଳିତ ହେଉଛି । ପୃଥିବୀର ସବୁ ପ୍ରାନ୍ତରୁ ଇଂରେଜୀ ଭାଷାକୁ ଭଲ ପାଉଥିବା ଲକ୍ଷ ଲକ୍ଷ ଲୋକ ପ୍ରତିବର୍ଷ ସେ ଉତ୍ସବରେ ଯୋଗ ଦିଅନ୍ତି ଏବଂ ସେକ୍ସପିୟରଙ୍କ ପ୍ରତି ସେମାନଙ୍କର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରନ୍ତି ।

ସେହିପରି ସାରଳାପୀଠ ସବୁଦିନ ପାଇଁ ଓଡ଼ିଆ ଜାତି ପକ୍ଷରେ ଏକ ସାରସ୍ୱତ ତୀର୍ଥଭୂମି ଭାବରେ ପ୍ରତିଷ୍ଠା ଅର୍ଜନ କରି ପାରିଛି । ଚିତ୍ରୋତ୍ପଳା ତୀରବର୍ତ୍ତୀ କନକପାଟଣା ଆଗରୁ ଏକ ପ୍ରସିଦ୍ଧ ଶକ୍ତିପୀଠ ରୂପେ ଖ୍ୟାତି ଅର୍ଜନ କରିଥିଲା । ଏଇଠି ମହାକବି ସାରଳା ଦାସ ଜନ୍ମଲାଭ କରିଥିଲେ ଏବଂ ପବିତ୍ର ମାଘ ସପ୍ତମୀ ଦିବସରେ ତାଙ୍କର ତିରୋଧାନ ହୋଇଥିଲା । ଶାରଳାଙ୍କ ଆଶୀର୍ବାଦ ଲଭିକରି ସାରଳା ଦାସ ଓଡ଼ିଆ ଭାଷା ଓ ସାହିତ୍ୟ ପାଇଁ ଯେଉଁ ଅମର କୀର୍ତ୍ତି ସୃଷ୍ଟି କରିଗଲେ ତାହା ସବୁଦିନ ପାଇଁ ଅମ୍ଲାନ ହୋଇ ରହି ଯାଇଛି । ତେଣୁ ଏହା ଓଡ଼ିଶାର ଏକ ସାରସ୍ୱତ ତୀର୍ଥଭୂମି । ଓଡ଼ିଆ ଭାଷାଭାଷୀ, ଓଡ଼ିଶାର କବି ଓ ଲେଖକବୃନ୍ଦ ସମସ୍ତେ ଏହି ପବିତ୍ର ଦିବସରେ ଏଠାକୁ ଆସି କବିଙ୍କ ଉଦ୍ଦେଶ୍ୟରେ ସେମାନଙ୍କର ଶ୍ରଦ୍ଧାଞ୍ଜଳି ଦେଇ ଯାଉଥିବେ । ଓଡ଼ିଶାର ଜନସାଧାରଣ ବିଗତ ପାଞ୍ଚଶତ ବର୍ଷ ହେଲା କବିଙ୍କୁ ତାଙ୍କର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ଆସୁଛନ୍ତି । ଗାଁ ଗହଳରେ ତାଙ୍କର ଅମର କୃତିକୁ ପାଠ କରୁଛନ୍ତି । ସେହିପରି ଆଧୁନିକ ଶିକ୍ଷିତ ସମାଜ ତାଙ୍କ ସମ୍ପର୍କରେ ନିତ୍ୟ ନୂତନ ଗବେଷଣାମାନ କରି ତାଙ୍କ ପ୍ରତି ଯଥାର୍ଥ ସମ୍ମାନ ପ୍ରଦର୍ଶନ କରିବା ବାଞ୍ଛନୀୟ ।

ନିକଟରେ ସାରଳାଦାସଙ୍କ ମହାଭାରତର ଏକ ଶୁଦ୍ଧ ସଂସ୍କରଣ ପ୍ରକାଶ ପାଇଛି । କିନ୍ତୁ ତାହା ଯେ ପ୍ରକୃତ ଶୁଦ୍ଧ ସଂସ୍କରଣ ଏଥିରେ ବହୁ ସନ୍ଦେହ ରହିବା ସ୍ୱାଭାବିକ । କାରଣ ସାରଳା ଦାସ ଯେଉଁ ସମୟରେ ମହାଭାରତ ରଚନା କରିଥିଲେ, ସେତେବେଳେ ଓଡ଼ିଶା ଭାରତ ଏକ ଶ୍ରେଷ୍ଠ ସାମ୍ରାଜ୍ୟ ରୂପେ ପରିଚିତ ହୋଇଥିଲା ।

କେବଳ ମରହଟ୍ଟାମାନଙ୍କୁ ଛାଡ଼ିଦେଲେ ଏତେ ବଡ଼ ବିଶାଳ ସାମ୍ରାଜ୍ୟ ଆଉ କେହି ବିସ୍ତାର କରିପାରି ନଥିଲେ । ମୋଗଲ ଓ ଗୁପ୍ତମାନଙ୍କର କିଛି କିଛି ପ୍ରଭାବ ଥିଲେ ମଧ୍ଯ ଗୋଟିଏ ପ୍ରାଦେଶିକ ରାଜ୍ୟ ଭାବରେ ଏତେ ପ୍ରତିଷ୍ଠା ଅର୍ଜନ କରିପାରି ନଥିଲେ । ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ କାବେରୀ ପର୍ଯ୍ୟନ୍ତ ମହାରାଜ କପିଳେନ୍ଦ୍ର ଦେବ ତାଙ୍କର ସାମ୍ରାଜ୍ୟ ବିସ୍ତାର କରିଥିଲେ । ସାରଳାଦାସ ଲେଖିଛନ୍ତି :—

"କଳକାଳ ଧ୍ୱଂସିଣ ଶ୍ରେଗେଣ କୋଟିଚ୍ଛିକା
ପ୍ରଳମ୍ବିତେ ଖଟଇଂ ଶ୍ରୀ କପିଳେଶ୍ୱର ମହାରାଜା ।"

କପିଳେନ୍ଦ୍ର ଯେଉଁକ ବିଶାଳ ସାମ୍ରାଜ୍ୟ ରଚନା କରିଥିଲେ, ସାରଳା ଦାସ ସେହିପରି ବିଶାଳ ସାମ୍ରାଜ୍ୟର ସାରସ୍ୱତ ସୂର୍ଯ୍ୟରୂପେ ଦେଖା ଦେଇଥିଲେ । ପ୍ରତାପରୁଦ୍ରଙ୍କ ପରେ ଅର୍ଥାତ୍ ୧୫୬୮ ମସିହାରେ କେବଳ ଓଡ଼ିଶାର ସ୍ୱାଧୀନତା ସୂର୍ଯ୍ୟ ଅସ୍ତମିତ ହେଲେ । କିନ୍ତୁ ୧୫୬୮ ମସିହା ପର୍ଯ୍ୟନ୍ତ, (ଶହେ ବର୍ଷରୁ ଊର୍ଦ୍ଧ୍ୱ ସମୟ) ସାରଳା ଦାସଙ୍କ ମହାଭାରତ ଏ ବିଶାଳ ସାମ୍ରାଜ୍ୟର ଘରିଆଡ଼େ ପଠିତ ହୋଇଥିବ । ତେଣୁ ମହାଭାରତ ପୋଥି କେବଳ ଓଡ଼ିଶାରେ ସୀମିତ ନ ହୋଇ ବର୍ତ୍ତମାନ କଥିତ ହେଉଥିବା ଆନ୍ଧ୍ର ପ୍ରଦେଶ କେତେକାଂଶରେ, ତେଲେଙ୍ଗାନାରେ ନିଶ୍ଚିତ ପଠିତ ହେଉଥିବ । ତାମିଲ ଦେଶରେ ପଠିତ ହେଉଥିବ ବଙ୍ଗଳାରେ ତ ଏହାର ପ୍ରମାଣ ରହିଚି । ସାରଳାଦାସଙ୍କ ମହାଭାରତ ବଙ୍ଗ ଅକ୍ଷରରେ ଓଡ଼ିଆ ଭାଷାରେ ଲେଖା ହୋଇଛି । ସେ ପୋଥି ସବୁ ଅଛି । ତେଣୁ ଦକ୍ଷିଣର ଓ ଉତ୍ତରର ସବୁକୁ ମିଶେଇ ଯେଉଁ ସଂସ୍କରଣ କରାଯିବ, ତାହାହିଁ କେବଳ ଶୁଦ୍ଧ ସାରଳା ସଂସ୍କରଣ ହୋଇ ପାରିବ । ଏ କାର୍ଯ୍ୟ ଦୁରୂହ ହେଲେ ମଧ୍ୟ କରଣୀୟ ।

ମହାକବି କହିଲେ ଯାହା ବୁଝାଯାଏ ସାରଳା ଦାସ ସେହି ମହାକବି ଶ୍ରେଣୀଭୁକ୍ତ ଥିଲେ । ମହାକବିମାନଙ୍କ ମଧ୍ୟରେ ସଂସ୍କୃତ ଭାଷାରେ ଯେପରି ବ୍ୟାସ, ବାଲ୍ମୀକି, କାଳିଦାସ ଓ ଇଂରେଜୀ ଭାଷାରେ ସେକ୍ସପିୟର, ଦାନ୍ତେ, ହୋମର ପ୍ରଭୃତି ସେହିପରି ଓଡ଼ିଆ ଭାଷାରେ ସାରଳା ଦାସ । ସାରଳା ଦାସଙ୍କ ମହାଭାରତ

ବ୍ୟାସଙ୍କ ରଚିତ ସଂସ୍କୃତ ମହାଭାରତର ଅନୁବାଦ ନୁହେଁ । ସେ ମହାଭାରତ ହେଉଛି ଓଡ଼ିଆ ଜାତିର ନିଜସ୍ୱ ମହାଭାରତ । ଏହା ସଂସ୍କୃତ ମହାଭାରତଠାରୁ କୌଣସି ଗୁଣରେ ନ୍ୟୂନ ନୁହେଁ । ଏଥିରେ ବହୁ ନୂଆ କଥା, ବହୁ ସୁନ୍ଦର ଉପାଖ୍ୟାନ ଉପସ୍ଥାପିତ କରାଯାଇ ଅଛି । ସେ ସମୟର ଓଡ଼ିଆ ଜାତିର ପ୍ରକୃତ ପ୍ରତିରୂପ ବା ପ୍ରତିଛବି ଏ ସବୁଥିରେ ନିଖୁଣ ଭାବରେ ଫୁଟି ଉଠିଛି । ତେଣୁ ସାରଳା ଦାସଙ୍କ କୃତ ମହାଭାରତ ମହାକାବ୍ୟ ଶ୍ରେଣୀର । ସଂସ୍କୃତ ମହାଭାରତରେ ଯେଉଁ ଉପାଖ୍ୟାନ ବା ଆଖ୍ୟାୟିକାମାନ ନାହିଁ ତାହା ସାରଳାଦାସଙ୍କ ମହାଭାରତରେ ରହିଅଛି ।

## ଭଗବାନ ସର୍ବତ୍ର ବିଦ୍ୟମାନ :—

'ନବଗୁଞ୍ଜର' ଗୋଟିଏ ନୂଆ କଥା । ଏହା କୌଣସି ପ୍ରାଦେଶିକ ସାହିତ୍ୟରେ ଦେଖିବାକୁ ମିଳେ ନାହିଁ । କିନ୍ତୁ ସାରଳା ଦାସ ଏହି ବିଚିତ୍ର ଜୀବ ନବଗୁଞ୍ଜରକୁ ସୃଷ୍ଟି କଲେ । ନବଗୁଞ୍ଜର ବହୁ ପ୍ରାଣୀଙ୍କର ଏକ ସମାବେଶ ସିଂହ, ହାତୀ, ବୃଷଭ, ଶୁଆ, ସାପ ଓ ମଣିଷ ପର୍ଯ୍ୟନ୍ତ । ଏ ଅଦ୍ଭୁତ ଜୀବ ସୃଷ୍ଟି କରି ସାରଳା ଦାସ ପ୍ରମାଣିକ କଲେ ଯେ ସମସ୍ତ ପ୍ରାଣୀଙ୍କ ମଧ୍ୟରେ ଭଗବାନ ବିଦ୍ୟମାନ ଅଛନ୍ତି । କାରଣ ଏ ସମସ୍ତଙ୍କ ସମାବେଶରେ ଯେଉଁ ଜୀବ ସୃଷ୍ଟି କରାଗଲା, ସେ ହେଉଛନ୍ତି ସ୍ୱୟଂ ଶ୍ରୀକୃଷ୍ଣ । ତାଙ୍କ ହାତରେ ଏକ ପଦ୍ମ ଫୁଲ ଥିବା ଯୋଗୁଁ ଅର୍ଜୁନ ତାଙ୍କୁ ଚିହ୍ନିପାରିଲେ । ବିଷ୍ଣୁ ସହସ୍ର ନାମରେ ପ୍ରତ୍ୟେକ ଜୀବ ଜନ୍ତୁ, ପଶୁପକ୍ଷୀ ଓ ବୃକ୍ଷଲତାଙ୍କର ନାମ ଉଲ୍ଲେଖ ଅଛି । ଭଗବାନଙ୍କର ହଜାର ନାମ ଭିତରେ ସବୁ ଉଦ୍ଭିଦ ଓ ପ୍ରାଣୀମାନେ ଅଛନ୍ତି । ସେମାନଙ୍କୁ ଅତି ସୁନ୍ଦର ଭାବରେ ସଜାଇ ସାରଳାଦାସ ନବଗୁଞ୍ଜର ସୃଷ୍ଟି କରିଛନ୍ତି । ସେହିପରି ଅନ୍ୟ ଏକ ଆଖ୍ୟାୟିକା ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ । ଏପରି ଆଖ୍ୟାୟିକା ସଂସ୍କୃତ ମହାଭାରତରେ ନାହିଁ କି ଅନ୍ୟ କୌଣସି ମହାଭାରତରେ ଦେଖିବାକୁ ମିଳେନାହିଁ । ଏହା ସାରଳା ଦାସଙ୍କର ସଂପୂର୍ଣ୍ଣ ନିଜସ୍ୱ । ଏହିପରି ସାରଳା

ଦାସଙ୍କର ପ୍ରତ୍ୟେକ ଉପାଖ୍ୟାନ ବା ଆଖ୍ୟାୟିକାରେ କିଛି କିଛି ଦର୍ଶନ ବା ତତ୍ତ୍ୱ ରହିଛି ।

## ଓଡ଼ିଆ ଭାଷାର ପ୍ରାଣ ପ୍ରତିଷ୍ଠାତା :—

ମହାଭାରତ, ବିଲଙ୍କା ରାମାୟଣ ଓ ଚଣ୍ଡୀପୁରାଣର ରଚୟିତା ସାରଳା ଦାସଙ୍କୁ ଓଡ଼ିଆ ଭାଷା ଓ ସାହିତ୍ୟର ଜନକ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ପାଞ୍ଚ ଶହ ବର୍ଷ ତଳେ ଯେତେବେଳେ ଓଡ଼ିଆ ଭାଷା କ'ଣ ବୋଲି କେହି ଜାଣି ନ ଥିଲେ, କେତେକ 'ବୋଲି', କଳସା ବା ଚଉତିଶା ଛଡ଼ା ଆଉ କେଉଁ ଲେଖା କିଛି ଲେଖାଯାଇ ନଥିଲା, ସେତେବେଳେ ସାରଳାଦାସ ଓଡ଼ିଆ ଭାଷାକୁ ଏକ ନୂଆ ରୂପ ଦେଲେ ! ବିଶାଳ ଓ ବିରାଟ ମହାଭାରତ ଗ୍ରନ୍ଥ ଲେଖିଲେ । ଯୁଗ ଯୁଗ ପାଇଁ ଓଡ଼ିଆ ଭାଷାର ଏହା ଗୌରବ ହୋଇ ରହିବ । ସବୁ ଭାଷାର ଜନନୀ ସଂସ୍କୃତ ଭାଷା । କେବଳ ତାମିଲ ଭାଷାକୁ ଛାଡିଦେଲେ କୌଣସି ପ୍ରାଦେଶିକ ଓ ଆଞ୍ଚଳିକ ଭାଷାରେ ଏତେ ବଡ଼ ବିଶାଳ ବିରାଟ ଗ୍ରନ୍ଥ କେହି ରଚନା କରି ନଥିଲେ । ସାରଳା ଦାସ ମହାଭାରତ ରଚନା କରି ଓଡ଼ିଆ ଭାଷାର ମହତ୍ତ୍ୱ ଏବଂ ଓଡ଼ିଆ ଭାଷାର ଶ୍ରେଷ୍ଠତ୍ୱକୁ ପ୍ରତିପାଦନ କରିଥିଲେ । ଭାରତ ବର୍ଷର ବହୁ ଭାଷାରେ ସଂସ୍କୃତକୁ ଅନୁକରଣ ଓ ଅନୁବାଦ କରି ବହୁ ଗ୍ରନ୍ଥ ଲେଖାଯାଇଛି । କିନ୍ତୁ ସାରଳା ଦାସଙ୍କ ମହାଭାରତରେ ସଂସ୍କୃତର ଅନୁକରଣ ଆଦୌ ନାହିଁ । ଭାଷାରେ ତ ଅନୁକରଣ ନାହିଁ; ଭାବରେ ମଧ୍ୟ ଅନୁକରଣ ନାହିଁ । ମୂଳ ସଂସ୍କୃତ ମହାଭାରତ ଯିଏ ପାଠ କରିଥିବେ ସାରଳା ଦାସଙ୍କ ମହାଭାରତ ପଢିଲେ ଉଭୟ ଭିତରେ ଥିବା ପାର୍ଥକ୍ୟକୁ ସହଜରେ ଜାଣି ପାରିବେ । ସାରଳା ଦାସ ତାଙ୍କ ମହାଭାରତରେ ଅତ୍ୟନ୍ତ ଗାଉଁଲି ଭାଷା ବ୍ୟବହାର କରିଛନ୍ତି । ଆଜି ତାକୁ ପଢ଼ିଲେ ଆମର ମନେ ହେବ ଯେ ସେ ଭାଷା ବର୍ତ୍ତମାନ ଆମର ପ୍ରଚଳିତ ନାହିଁ । ଆମ ଭାଷା ଆଜି ସଂସ୍କୃତ, ଇଂରେଜି ଓ ନାନାଦି ଭାଷା ଦ୍ୱାରା ପ୍ରଭାବିତ । ତେଣୁ ଆମେ ସାରଳାଙ୍କର ସେହି ସରଳ ଭାଷାକୁ ସହଜରେ ବୁଝି ପାରୁନାହୁଁ । କିନ୍ତୁ ତାହା

ଅଶେଷ ପ୍ରାଣ ପ୍ରାଚୁର୍ଯ୍ୟରେ ଭରା ! କେତେ ନୂଆ ଶବ୍ଦ ସେ ସୃଷ୍ଟି କରିଛନ୍ତି ଓ ସେଗୁଡ଼ିକୁ ନିଜ ରଚନାରେ ବ୍ୟବହାର କରିଛନ୍ତି । ସେ ଭାଷା ଓ ସେ ଶବ୍ଦ ଦେଖିଲେ ଆଜି ବିସ୍ମିତ ହେବାକୁ ପଡ଼େ । ସେକ୍ସପିଅର ଯେତେବେଳେ ତାଙ୍କ କାବ୍ୟ ଲେଖିଲେ ସେତେବେଳେ ଇଂରେଜୀ ଭାଷା ଅତି ଦରିଦ୍ର ଥିଲା । ତେଣୁ ସେ ତା' ଭିତରେ ପ୍ରାୟ ୯ ହଜାର ଶବ୍ଦ ଆଣି ଭର୍ତ୍ତି କଲେ । ଗ୍ରୀକ୍ ଶବ୍ଦ ଆଣିଲେ । ଲାଟିନ୍ ଶବ୍ଦ ଆଣିଲେ । ବିଭିନ୍ନ ଇଉରୋପୀୟ ଭାଷାରୁ ଶବ୍ଦ ଆଣି ତହିଁରେ ଯୋଗ କଲେ । ଫଳରେ ଇଂରେଜୀ ଭାଷା ଏକ ସମୃଦ୍ଧ ଭାଷାରେ ପରିଣତ ହୋଇଗଲା । ସେହିପରି ସାରଳା ଦାସ ସଂସ୍କୃତ, ଦ୍ରାବିଡ଼, ତାମିଲ, ତେଲୁଗୁ ପ୍ରଭୃତି ବିଭିନ୍ନ ଭାଷାରୁ ଶବ୍ଦମାନ ଆଣି ସେଗୁଡ଼ିକୁ ନିଜ ଭାଷାରେ ଯୋଗ କରି ଭାଷାକୁ ସମୃଦ୍ଧ ଓ ଋଦ୍ଧିମନ୍ତ କରିଛନ୍ତି । ଅନେକ ନୂଆ ନୂଆ ଶବ୍ଦ ସେ ନିଜେ ସୃଷ୍ଟି କରିଛନ୍ତି; ଯଥା— ବାବନାଭୂତ । ବାବାନାଭୂତ ଶବ୍ଦଟି କେବଳ ସାରଳା ଦାସଙ୍କ ମହାଭାରତରୁ ଆସିଛି । ପୁଣି ତାଙ୍କର "ଖାଇବା ବଳ କୁଇଁତାକୁ ଜଣା" ପ୍ରଭୃତି ସରଳ ଅଭିବ୍ୟକ୍ତି ଆଜି ବିଶେଷ ଭାବରେ ବ୍ୟବହୃତ ହେଉଥିବା ଜଣାଯାଏ । ସାରଳା ଦାସ ଓଡ଼ିଆ ସାହିତ୍ୟ ପାଇଁ ଏକ ସ୍ୱତନ୍ତ୍ର ଶବ୍ଦ ଭଣ୍ଡାର ସୃଷ୍ଟି କରି ଯାଇଛନ୍ତି । ସେ ସବୁ ଶବ୍ଦର ଏକ ଅଭିଧାନ ରଚିତ ହେବା ଦରକାର ।

**ସାରଳାଦାସଙ୍କ ସଂଗ୍ରାମ :—**

ସାରଳା ଦାସଙ୍କ ମହାଭାରତ, ପ୍ରାକୃତ ଭାଷାରେ ଲିଖିତ ମହାଭାରତମାନଙ୍କ ମଧ୍ୟରେ ପ୍ରାଚୀନତମ । ସେତେବେଳକୁ ବଙ୍ଗ ଭାଷାରେ ମହାଭାରତ ଲେଖା ହୋଇ ନ ଥିଲା । ପାଞ୍ଚଶହ ବର୍ଷ ତଳେ ଏତେବଡ଼ ବିରାଟ କୃତି ରଚିତ ହୋଇପାରେ ଏକଥା କେହି କଳ୍ପନା କରି ପାରିବେ ନାହିଁ । ଏତେ ନୂଆ ଶବ୍ଦ ବିଭବ ତା' ଭିତରେ ଅଛି ତାହା ଭାବିଲେ ବିସ୍ମିତ ହେବାକୁ ପଡ଼େ । ସଂସ୍କୃତ ପରି ତାମିଲ ଭାଷା ହେଉଛି ଅତି ପ୍ରାଚୀନ ଭାଷା । ଖ୍ରୀଷ୍ଟ ପୂର୍ବ ଦ୍ୱିତୀୟ ଶତାବ୍ଦୀରୁ ତାମିଲ

ଭାଷା ଅଛି । ସେ ଭାଷାରୁ ସେ ଅନେକ ଶବ୍ଦ ଆଣିଛନ୍ତି । ଆଜି ଓଡ଼ିଆ ଭାଷାର ଚଳନ୍ତି ଭାଷାରେ ସେସବୁ ପ୍ରଚଳିତ ହୋଇ ଗଲାଣି ।

ସାରଳା ଦାସ ଥିଲେ ଜଣେ ଭାଷାର ସମ୍ରାଟ୍ । ଓଡ଼ିଆ ଭାଷାକୁ ଗଠନ କରିବାରେ ତାଙ୍କର ନିପୁଣତାକୁ ଓଡ଼ିଆ ଜାତି ଚିରଦିନ ମନେ ରଖିବ । ମହାଭାରତ ହେଉଛି ଭାରତୀୟ ସଂସ୍କୃତିର ପ୍ରତୀକ । ଯେତେଦିନ ପର୍ଯ୍ୟନ୍ତ ଏ ଦେଶରେ ରାମାୟଣ ଓ ମହାଭାରତ କଥିତ ଓ ପଠିତ ହେଉଥିବ ସେ ପର୍ଯ୍ୟନ୍ତ ଏ ଜାତିକୁ କେହି ମାରି ପାରିବେ ନାହିଁ । ଗୋଟିଏ ସମୟରେ ଆମ ଉପରେ ପାଶ୍ଚାତ୍ୟ ପ୍ରଭାବ ଖୁବ୍ ଆସି ପଡ଼ିଲା । ସେତେବେଳେ ଏ ଦେଶର ସଂସ୍କୃତି ସମ୍ପୂର୍ଣ୍ଣ ଭାବରେ ଧ୍ୱଂସର ସମ୍ମୁଖୀନ ହେଲା । ପାଶ୍ଚାତ୍ୟର ପ୍ରଭାବରେ ଓଡ଼ିଆ ଭାଷା ଓ ସଂସ୍କୃତିକୁ ସମ୍ପୂର୍ଣ୍ଣ ଭାବରେ ବଦଳାଇ ଦେବା ପାଇଁ ଚେଷ୍ଟା କରାଯାଇଥିଲା । ମାତ୍ର ମହାଭାରତ ଓ ରାମାୟଣ ଥିବା ଯୋଗୁଁ ଭାଷା ଓ ସଂସ୍କୃତିର କୌଣସି ପରିବର୍ତ୍ତନ ହେଲା ନାହିଁ । ଆମର ସଂସ୍କୃତି ଅମର ହୋଇ ରହିଗଲା । ଓଡ଼ିଆ ଭାଷା ବିରୁଦ୍ଧରେ ଯେତେବେଳେ ଯେଉଁ ଚକ୍ରାନ୍ତ ହୋଇଛି କେହି ଏହି ଭାଷାକୁ ମାରିପାରି ନାହାନ୍ତି । କାରଣ ସାରଳା ଦାସଙ୍କ ମହାଭାରତ ଓଡ଼ିଆ ଭାଷାର ଏକ ବିରାଟ ଗୌରବମୟ ସ୍ତମ୍ଭ ରୂପରେ ଦଣ୍ଡାୟମାନ ହୋଇ ରହି ଆସିଛି ।

## ସମନ୍ୱିତ ବିକାଶ ଓ ପବିତ୍ର ଆତ୍ମ ବିଶ୍ୱାସର ପ୍ରତୀକ :—

ଯେ କୌଣସି ଦେଶ ବା ଜାତି ପକ୍ଷରେ କେବଳ ସମୃଦ୍ଧି ଯଥେଷ୍ଟ ନୁହେଁ । ସମୃଦ୍ଧି ସହିତ ସଂସ୍କୃତିର ବିକାଶ ଏକାନ୍ତ ଆବଶ୍ୟକ । ସମୃଦ୍ଧି ଓ ସଂସ୍କୃତି ଉଭୟର ବିକାଶ ନ ହେଲେ ଜାତିର କେବେହେଲେ ସମନ୍ୱିତ ବିକାଶ ହୋଇ ପାରିବ ନାହିଁ । ଉଦାହରଣ ସ୍ୱରୂପ ଯୁକ୍ତରାଷ୍ଟ୍ର ଆମେରିକାକୁ ନିଆ ଯାଇପାରେ । ବର୍ତ୍ତମାନ ପୃଥିବୀର ସର୍ବଶ୍ରେଷ୍ଠ ଐଶ୍ୱର୍ଯ୍ୟର ଅଧିକାରୀ ହେଉଛି ଆମେରିକା । କିନ୍ତୁ ଆମେରିକାର ଲୋକମାନଙ୍କୁ ୟୁରୋପର ଲୋକମାନେ ସୁଦୃଷ୍ଟିରେ ଦେଖନ୍ତି ନାହିଁ । କାରଣ ସଂସ୍କୃତି ଦୃଷ୍ଟିରୁ ଆମେରିକା ହେଉଛି ଅତ୍ୟନ୍ତ ଦରିଦ୍ର । ଆମେରିକାର ଲୋକମାନେ ଆମ

ଦେଶକୁ ଆସିବା ସମୟରେ କେଉଁଠି ହଜାରେ ବର୍ଷର ମନ୍ଦିରଟିଏ ଦେଖିଲେ ଖୁବ୍ ବିସ୍ମିତ ହୋଇ ପଡ଼ନ୍ତି । କାରଣ ଆମେରିକାର ଇତିହାସ, କେବଳ ମାତ୍ର ୩୦୦ ବର୍ଷର ଇତିହାସ । ସମୃଦ୍ଧିର ଚୂଡ଼ାନ୍ତ ଶିଖରରେ ପହଞ୍ଚିଲେ ମଧ୍ୟ ସଂସ୍କୃତି କ୍ଷେତ୍ରରେ ସେମାନେ ବହୁତ ପଛରେ ପଡ଼ିଛନ୍ତି । ଏତେ ଧନାଢ୍ୟ ଦେଶ ହୋଇ ମଧ୍ୟ ସଂସ୍କୃତିର ଯାହା ବିକାଶ ହେବା କଥା, ତାହା ତାଙ୍କର ହୋଇ ନାହିଁ । ତେଣୁ ସମୃଦ୍ଧି ଯଥେଷ୍ଟ ନୁହେଁ । ସମୃଦ୍ଧି ସହିତ ସଂସ୍କୃତିର ବିକାଶ ଏକାନ୍ତ ଆବଶ୍ୟକ ।

ଆଦିକବି ସାରଳା ଦାସ ଆମ ସଂସ୍କୃତିର ମୂଳଧାର କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କୁ ଆମ ଜାତୀୟ ସାହିତ୍ୟର ଜାହ୍ନବୀ ବୋଲି କୁହାଯାଇ ପାରେ । ତାଙ୍କଠାରୁ ସମସ୍ତେ ଶକ୍ତି ଆହରଣ କରିଛନ୍ତି । ସବୁକାଳ ପାଇଁ ଓଡ଼ିଆ ସାହିତ୍ୟରେ ସେ ଶକ୍ତିର ଉତ୍ସ ହୋଇ ରହିବେ । କେବଳ ସେତିକି ନୁହେଁ, ସେ ପ୍ରଚଣ୍ଡ ଆତ୍ମ ବିଶ୍ୱାସର ଅଧିକାରୀ ଥିଲେ । ସ୍ୱର୍ଗାରୋହଣ ପର୍ବରେ କବି ଲେଖିଛନ୍ତି—

"ପ୍ରଥମ ଜନ୍ମରେ ମୁଁ ହୋଇଲି କାଳିଦାସ
ମହାକାଳିକା ବିଜୟ -ଜାତା ଅଂଶ ।
ତୃତୀୟ ଜନ୍ମରେ ମୁଁ ସାରୋଳଦାସ କବି
ଆର ଜନ୍ମରେ ପୁଣି ମୃତ୍ୟୁ ମଣ୍ଡଳେ ଜନ୍ମିବି ।"

ପ୍ରଥମ ଜନ୍ମରେ ସେ କାଳିଦାସ ହୋଇ ଜନ୍ମ ହୋଇଥିଲେ । ଏବେ ସାରଳାଦାସ ହୋଇ ଜନ୍ମ ହୋଇଛନ୍ତି । ଦରକାର ପଡ଼ିଲେ ପୁଣି ଆଉଥରେ ଜନ୍ମ ହେବେ । କି ପ୍ରଚଣ୍ଡ ଆତ୍ମବିଶ୍ୱାସ ! ! ଯେ କବି, ଯେ ଦ୍ରଷ୍ଟା ଓ ସାହିତ୍ୟିକ, ତାଙ୍କର ପ୍ରଚଣ୍ଡ ଆତ୍ମ ବିଶ୍ୱାସ ନ ରହିଲେ ସେ କେବେ ଚିରଦିନ ପାଇଁ ସାହିତ୍ୟ ସୃଷ୍ଟି କରି ପାରିବେ ନାହିଁ ।

କବିଙ୍କର ଯେଉଁପରି ପ୍ରଚଣ୍ଡ ଆତ୍ମ ବିଶ୍ୱାସ ଥିଲା ସେପରି ବିନୟ ଓ ନମ୍ରତା ତାଙ୍କଠାରେ ଶୋଭା ପାଉଥିଲା । ନିଜକୁ ଏତେ ନ୍ୟୂନ ପ୍ରତିପାଦନ କରି କୌଣସି

କବି କେବେ ଲେଖି ନାହାନ୍ତି । ମୁଁ ଅତ୍ୟନ୍ତ ଅଜ୍ଞ, ଅପଣ୍ଡିତ ଅଜଣା ଅଶୁଣା । ମୁଁ ଯେଉଁଠି ଜନ୍ମ ହୋଇଛି ତାହା ଲୋକେ ଜାଣି ନାହାନ୍ତି । ମୁଁ ଯେଉଁ କୁଳରେ ଜନ୍ମଲାଭ କରିଛି ତାକୁ ମଧ୍ୟ କେହି ଜାଣି ନାହାନ୍ତି । ମୁଁ ଯାହା କେବଳ ଲେଖିଛି ବା ଲେଖି ପାରିଛି, ତାହା କେବଳ ସାରଳାଙ୍କ ପ୍ରସାଦରେ ଲେଖିଛି ।

ଜାତିରେ ଶୁଦ୍ର ମୁଁ ଯେ ଅଟଇ ମୂରୁଖ
ପାଠ ଶାହାସ୍ତ୍ରମାନ ମୁଁ ନ ଜାଣଇ ହାକ ।

× × ×

ଶ୍ରୀ ସାରୋଳା ଚଣ୍ଡୀ ନାମେ ଯେ ଅଟଇ ମହାଦେବୀ
ତାହାଙ୍କର ପୁତ୍ର ମୁଁ ଯେ ସାରୋଳା ଦାସ କବି ।

ପ୍ରସନ୍ନେଣ ଆଗ୍ୟାଂ ମୋତେ ଦଲେ ଶାକାମ୍ବେରୀ
ଲଭ ତୁ କପିଳାସ ଶ୍ରୀ ମହାଭାରଥ କରି ।

ଶୁଣି ବୁଧ ଜନେ ନ ଧରି ଆନ ଚିତ୍ତ
ଜନ୍ମେଣ ମୂରୁଖ ମୁହିଁ ନୋହଇ ପଣ୍ଡିତ ॥

## ସୁଦୂର ପ୍ରସାରୀ ସାମ୍ରାଜ୍ୟ

ସାରଳା ଦାସ ଯେତେବେଳେ ମହାଭାରତ ରଚନା କରିଥିଲେ ସେତେବେଳେ ଓଡ଼ିଶା ଦେଶର ସୁଦୂର ପ୍ରସାରୀ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇଥିଲା । ତାହା ହେଉଛି କପିଳେନ୍ଦ୍ର ଦେବଙ୍କ ସମୟ । ଉତ୍ତରରେ ଗଙ୍ଗା ଓ ଦକ୍ଷିଣରେ କାବେରୀ । ମହାଭାରତ ଯୁଦ୍ଧର ନିଖୁଣ ବର୍ଣ୍ଣନା ପାଠକଲେ ଜଣାଯାଏ ସତେ ଯେପରି ସେ କପିଳେନ୍ଦ୍ର ଦେବଙ୍କ ସେନାବାହିନୀର ଜଣେ ସୁଦକ୍ଷ ସୈନିକ ବା ସେନାପତି ଥିଲେ । କପିଳେନ୍ଦ୍ର ଦେବଙ୍କ ସେନା ବାହିନୀରେ ସତେ ଯେପରି ସେ ନିଜେ ଯାତ୍ରା କରିଥିଲେ । ମହାଭାରତରେ ଥିବା ଅନେକ ତେଲୁଗୁ, ତାମିଲ୍ ଶବ୍ଦରୁ ତାହା ଜଣାପଡେ ।

କପିଳେନ୍ଦ୍ରଙ୍କ ପରି ସାରଳା ଦାସ ଓଡ଼ିଆ ଜାତିର ଗୌରବ । ଜାତିର ଜାତୀୟ ଗର୍ବ ଓ ଗୌରବ ବୋଧ ନ ରହିଲେ କୌଣସି ଜାତି ଉପରକୁ ଉଠିପାରେ ନାହିଁ । ଯେପରି ପ୍ରତ୍ୟେକ ଇଂରେଜ ଛାତ୍ରର, ସେ ସ୍କୁଲ ଛାତ୍ର ହେଉ ବା କଲେଜ ଛାତ୍ର ହେଉ ସେକ୍ସପିଅର ପଢ଼ିବା ଅନିବାର୍ଯ୍ୟ । କାରଣ ସେକ୍ସପିଅର ନ ପଢ଼ିଲେ ଭାଷା ଶିକ୍ଷା ସମ୍ପୂର୍ଣ୍ଣ ନୁହେଁ । ସେହିପରି ଯେ କୌଣସି ଓଡ଼ିଆ ପକ୍ଷରେ ସାରଳାଦାସ ନ ପଢ଼ିଲେ ଓଡ଼ିଆ ଭାଷା ଶିକ୍ଷା ସମ୍ପୂର୍ଣ୍ଣ ହେବନାହିଁ । ସେକ୍ସପିଅର ଯେପରି ପ୍ରତ୍ୟେକ ଇଂରେଜର ଗର୍ବ ଏବଂ ଗୌରବ ସାରଳା ଦାସ ସେହିପରି ପ୍ରତ୍ୟେକ ଓଡ଼ିଆର ଗର୍ବ ଏବଂ ଗୌରବ । ମହାଭାରତ ପଢ଼ିଲେ ଜଣାଯାଏ ସତେ ଯେପରି ମହାଭାରତ ଯୁଦ୍ଧ ହସ୍ତିନାରେ ହୋଇନାହିଁ । ଏ ଯୁଦ୍ଧ ହୋଇଛି ଓଡ଼ିଶାରେ । ଏଇଠିକି ଯୁଧିଷ୍ଠିର ଆସିଛନ୍ତି ଏବଂ ଭୀମ ସହିତ ତାଙ୍କର ଅନ୍ୟ ଭାଇମାନେ ଆସିଛନ୍ତି । ଏଇଠି ତାଙ୍କର ବିବାହ ହୋଇଛି । ଏଇଠି ସେ ତାଙ୍କର ଜୀବନ କଟାଇଛନ୍ତି । ତେଣୁ ସଂସ୍କୃତ ମହାଭାରତ ଠାରୁ ସାରଳା ମହାଭାରତ କେତେ ଯେ ତଫାତ୍ ତାହା ସହଜରେ ଜଣାପଡ଼େ । ଏ ମହାଭାରତରେ କେତେ ଦେଶାତ୍ମବୋଧ, କେତେ ଜାତୀୟତା ଆଜି ଯଦି ଓଡ଼ିଶାର ପୁରପଲ୍ଲୀରେ ସାରଳାଙ୍କ ମହାଭାରତ କଥା ଯଥାର୍ଥ ଭାବରେ ପଠିତ ହୁଏ ତାହାହେଲେ ସାରଳା ଦାସଙ୍କ ପ୍ରତି ତାହା ହେବ ଏ ଜାତିର ଉପଯୁକ୍ତ ଶ୍ରଦ୍ଧାଞ୍ଜଳି ।

[ ସାରଳା ପୀଠରେ ପ୍ରଦତ୍ତ ଭାଷଣରୁ ଗୃହୀତ ]

ଓଡ଼ିଶାର ବିପୁଳ ପ୍ରାକୃତିକ ସମ୍ପଦ ଓ ଲୋକ ସମ୍ପଦର ବିନିଯୋଗ କରାଯାଇ ଓଡ଼ିଶାକୁ କିପରି ଭାବରେ ଏକ ଶ୍ରେଷ୍ଠ ରାଜ୍ୟରେ ପରିଣତ କରିବାକୁ ହେବ, ସେଥିପାଇଁ ସରକାର ଅବିରତ ଉଦ୍ୟମ କରି ଚାଲିଛନ୍ତି ଏବଂ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ୨୦ ଦଫା କାର୍ଯ୍ୟକ୍ରମକୁ ସଫଳ ରୂପାୟିତ କରିବା ପାଇଁ ଦ୍ରୁତ ପଦକ୍ଷେପ ନେଉଛନ୍ତି । କୃଷିର ଉନ୍ନତି, ଶିଳ୍ପ ପ୍ରସାର ଏବଂ ଦୁର୍ବଳତମ ଲୋକଙ୍କର ଥଇଥାନ ହୋଇଛି ତାହାର ତିନୋଟି ପ୍ରଧାନ ଆଭିମୁଖ୍ୟ ।

# ସାରଳା ଦାସଙ୍କ ସ୍ୱଧର୍ମ ଧାରଣା

ଶ୍ରୀ କାଳୀପ୍ରସନ୍ନ ପରୀଜା

ପୂର୍ବ ପ୍ରକାଶିତ ପ୍ରବନ୍ଧରେ ସାରଳାଦାସଙ୍କ ଶକ୍ତି ଉପାସନା ଏବଂ ତାଙ୍କ ଶାକ୍ତ ପ୍ରବଚନ ସମ୍ପର୍କରେ ମୁଖ୍ୟତଃ ଆଲୋଚନା କରାଯାଇଥିଲା । ସାରଳା ଦାସ ନିର୍ବିକାର ଶକ୍ତି ସାଧକ ଥିଲେ ମଧ୍ୟ ବୈଷ୍ଣବୀୟ ପରମ୍ପରା ମାର୍ଗ ଦର୍ଶନରେ ଦେବୀ ଭକ୍ତି ଓ ନିଷ୍ଠା ପ୍ରଦର୍ଶନରେ ସେ କାର୍ପଣ୍ୟ ପ୍ରଦର୍ଶନ କରିନାହାନ୍ତି । ତାଙ୍କ ଧର୍ମଧାରଣାର ପ୍ରଚ୍ଛନ୍ନ ଗୁପ୍ତ ଗଙ୍ଗା ଶକ୍ତିବାଦ ହେଲେହେଁ ସେ ଯେ ଶୈବ ବା ବୈଷ୍ଣବ ପ୍ରଭାବରୁ ମୁକ୍ତ ଥିଲେ, ଏହା କହିବା କଷ୍ଟକର ।

ସମୟେ ସମୟେ ଦେଖାଯାଇଥାଏ କେତେକ ସାଧକ ତଥା ଭକ୍ତ ତାଙ୍କ ସାଧନାରେ ଐକିକ ଧର୍ମଧାରଣାର ବଶବର୍ତ୍ତୀ ହୋଇଥାନ୍ତି ଏବଂ ବିଭିନ୍ନ ଧର୍ମାଶ୍ରୟରୁ ମୁକ୍ତ ହୋଇଥାଆନ୍ତି । ଉଦାହରଣ ସ୍ୱରୂପ ପଞ୍ଚସଖା ଯୁଗର ସାଧକମାନେ । ଗୋସ୍ୱାମୀ ତୁଳସୀଦାସ ଏବଂ ମହାପ୍ରଭୁ ଶ୍ରୀଚୈତନ୍ୟ ପ୍ରମୁଖ ଐକିକତାର ପ୍ରବକ୍ତା ।

କୃଷ୍ଣ ବାସୁଦେବ ଚେତନା ଏବଂ ଭାଗବତ ଧର୍ମର ପୂର୍ଣ୍ଣ ବିକାଶ ହୋଇ ସାରିଥିବା ସମୟକୁ ସାରଳାଦାସ ଲେଖନୀ ଧରିଥିଲେ । ପୁରୁଷୋତ୍ତମ କ୍ଷେତ୍ର ପ୍ରତିଷ୍ଠା ଏବଂ ଗଜପତି କପିଳେନ୍ଦ୍ର ଦେବଙ୍କର ଜଗନ୍ନାଥ ଶରଣ କବିଙ୍କୁ ରାଜ-ଅନୁଗ୍ରହ ପାଇଁ ହେଉ ବା ପୁରୀରେ ରହି ଶ୍ରୀକ୍ଷେତ୍ର ମାହାତ୍ମ୍ୟ ଉପଲବ୍ଧି ଜନିତ ଭାବାବେଗ ହେଉ ମହାଭାରତରେ ଜଗନ୍ନାଥ ଧର୍ମର ମାହାତ୍ମ୍ୟ ଦେବୀ ମାହାତ୍ମ୍ୟ ପରେ ବହୁଳ ଚର୍ଚ୍ଚିତ ବିଷୟ ।

ପାଠକମାନେ ଏହା ସ୍ୱୀକାର କରିବେ ଯେ, ସାରଳାଦାସଙ୍କ ପ୍ରଚ୍ଛନ୍ନ ଧର୍ମଧାରଣାର ଗଙ୍ଗା ବେଗବାନ ସ୍ରୋତସ୍ୱିନୀ ହେଉଛି ଉଦ୍ଧମଙ୍ଗଳ ଜଗନ୍ନାଥ ସ୍ମରଣ । ପ୍ରତ୍ୟେକଟି କଥାରେ, ଶୁଭ କର୍ମରେ, ଚିନ୍ତନରେ, ପ୍ରସ୍ତାବନାରେ ଜଗନ୍ନାଥ ପ୍ରଣୈତା । ଯଦି ସାରଳାଦାସ ସଂସ୍କୃତ ଅଭିଜ୍ଞ, ପଣ୍ଡିତମାନ୍ୟ ବ୍ୟକ୍ତି ହୋଇଥାନ୍ତେ ତେବେ ଲୋକାଗ୍ରହ ଏବଂ ବିଶ୍ୱାସକୁ ନେଇ ଏ ଜାତିର ପ୍ରାଣ କେନ୍ଦ୍ରରେ ଜଗନ୍ନାଥଙ୍କୁ ବସେଇ ନଥାନ୍ତେ କିମ୍ବା ଜଗନ୍ନାଥ ସ୍ମରଣରେ ଏତେ ଗଭୀର ମନୋନିବେଶ କରିନଥାନ୍ତେ । ତାଙ୍କ ମହାଭାରତରେ ଯେଉଁ ନୀଳ ସୁନ୍ଦର ପର୍ବତ ଓ ନୀଳକଳ୍ପବଟର ପ୍ରାୟୋଗିକ ବର୍ଣ୍ଣନା ବାରମ୍ବାର ଦିଆଯାଇଛି ତାହା ପ୍ରତ୍ୟେକଟି ଓଡ଼ିଶାର ପ୍ରାଣର ଭାବାବେଗର ଚିହ୍ନ । 'ସର୍ବଜ୍ଞାନ ବର୍ଜିତ ଜଗନ୍ନାଥ' ସାରଳା ଦାସଙ୍କ ଲେଖନୀରେ ତନ୍ତ୍ର-ବୌଦ୍ଧର ଦେବତା ନୁହନ୍ତି । ସେ ନୀଳ ସାଗରରେ ଭାସୁଥିବା ଶ୍ରୀକୃଷ୍ଣଙ୍କ ଶରୀରର ପିଣ୍ଡ ଅବଶେଷ । ସେଥିରେ ବିଷ୍ଣୁତ୍ୱର ଆରୋପଣକରି ପରବର୍ତ୍ତୀ ଯୁଗର (ଉତ୍ତର ଶାରଳା) ଧର୍ମ ଧାରଣା ଏବଂ ବୈଷ୍ଣବ ସାହିତ୍ୟ ତଥା ଅନ୍ୟାନ୍ୟ ସନ୍ଥ ସାହିତ୍ୟ ପାଇଁ ପ୍ରଚୁର ସମ୍ଭାବନା ସାରଳାଦାସ ରଖିଯାଇଛନ୍ତି ।

ସାରଳାଦାସଙ୍କ ଶ୍ରୀକୃଷ୍ଣ ଭାଗବତ ବା ସଂସ୍କୃତ ମହାଭାରତର ଶ୍ରୀକୃଷ୍ଣ ନୁହଁନ୍ତି । ସେ ଲକ୍ଷେ ଶୃଙ୍ଗାର ଇଚ୍ଛା କରୁଥିବା, ପୁନଶ୍ଚ ଅଞ୍ଜନ ବିଦ୍ୟାରେ ନିପୁଣ ହୋଇଥିବା, ପାଣ୍ଡବଙ୍କ ରାଜସୂୟ ଯଜ୍ଞରେ ରନ୍ଧନ ଶାଳରେ ନିଜେ ଚର୍ଚ୍ଚା କରୁଥିବା (ସଭାପର୍ବ) ରାଜସୂୟ ଯଜ୍ଞରେ ନିଜେ ବରଣୀୟ ହୋଇ ମିତ୍ର ମାନଙ୍କର ଦୈତ୍ୟ ବୃତ୍ତି କରୁଥିବା, ବିଭିନ୍ନ ସଂକଟ କାଳରେ ଉପସ୍ଥିତ ତତ୍କାଳିକ ବୁଦ୍ଧି ବଳରେ ପାଣ୍ଡବ ମାନଙ୍କୁ ତ୍ରାଣ କରିପାରୁଥିବା, କୁରୁକ୍ଷେତ୍ର ପ୍ରଣୟରେ ପ୍ରଚୁର ପଶ୍ଚାତ୍ତାପ କରୁଥିବା ଏକ ଅସାଧାରଣ, କ୍ଷୁରଧାର ବୁଦ୍ଧି ସମ୍ପନ୍ନ ସର୍ବମାନ୍ୟ ବ୍ୟକ୍ତି ରୂପେ ଆତ୍ମପ୍ରକାଶ କରିଛନ୍ତି ଯଦିଓ ଚରିତ୍ରର କଳଙ୍କିତ ଦିଗଟା କେତେ ମାନଙ୍କରେ ପ୍ରକଟିତ ହୋଇଛି । ବଡ଼ ବିସ୍ମୟର କଥା ସେଇ ସାରଳା ଦାସ ପୁଣି ଶ୍ରୀକୃଷ୍ଣଙ୍କୁ ମହାନ ଯୋଗ ପୁରୁଷ ରୂପେ ଚିତ୍ରିଛନ୍ତି । ଜାରାଶବର ଦ୍ୱାରା ଶରାଘାତ ହୋଇ ଶିଆଳି ଲତାରେ ପଡ଼ି ଶୟନ କରିଥିବା ସମୟରେ ଉଦ୍ଧବ ଉପସ୍ଥିତ ହୋଇଛନ୍ତି ।

ଶ୍ରୀକୃଷ୍ଣ ଉଦ୍ଧବଙ୍କୁ ବୁଝାଉଛନ୍ତି ବ୍ରହ୍ମଜ୍ଞାନର ଅଧିକାରୀ ନହେଲେ ସେ ବୈକୁଣ୍ଠକୁ ଯାଇ ପାରିବେ ନାହିଁ । ଉଦ୍ଧବଙ୍କୁ ଏଭଳି ସ୍ୱର୍ଗ ଗାମୀ ହେବାକୁ ନିବର୍ତ୍ତାଇବା ସଙ୍ଗେ ସଙ୍ଗେ ସମସ୍ତଙ୍କ ଉଦ୍ଦେଶ୍ୟରେ ସୂଚନା ଦେଇଛନ୍ତି ଯେ, ତାଙ୍କୁ ପୁଣି ଭେଟିବାକୁ ହେଲେ ଭେଟି ହେବ ନୀଳକଳ୍ପବଟ ନୀଳକନ୍ଦର ପର୍ବତରେ—ବୌଦ୍ଧକୃପୁରେ ।

ତେବେ କଥା କବି 'ସମ୍ବଲ'ର ରାଜା ଇନ୍ଦ୍ରଭୂତି ଏବଂ ତାଙ୍କ ଭଉଣୀ ସୋନପୁର (ଲଙ୍କାଗଡ଼)ର ରାଣୀ ଲକ୍ଷ୍ମୀଙ୍କରଙ୍କ ପ୍ରଦର୍ଶିତ "ସର୍ବଜ୍ଞାନ ବରାର୍ଜିତ" ଜଗନ୍ନାଥଙ୍କୁ ଧ୍ୟାନ କରିବାରେ ଏକ ସ୍ୱତନ୍ତ୍ର ସୂତ୍ର କଳନା କରି ବାସୁଦେବ-ବୁଦ୍ଧ-ଜଗନ୍ନାଥଙ୍କୁ ଏକାକାର କରିଦେଇଛନ୍ତି । ରହସ୍ୟ ଗୁମ୍ଫିତ ସାରଳା ସୃଷ୍ଟି ସମ୍ପଦର ଏଇଟି ଏକ ଗୋଲକ ଧନ୍ଦା । ସଂସ୍କୃତ ମହାଭାରତର କୃଷ୍ଣ-ବାସୁଦେବଙ୍କର ଜ୍ଞାନ-କର୍ମ-ସାଂଖ୍ୟ ଯୋଗର ତର୍କଣା ସାରଳା ଦାସଙ୍କର ଶ୍ରୀକୃଷ୍ଣଙ୍କର ମୁଖରୁ ଶୁଣାଯାଇ ନାହିଁ ତେଣୁ ଜଗନ୍ନାଥଙ୍କ ଠାରେ କୃଷ୍ଣତ୍ୱ ଆରୋପଣ ବା ପଶ୍ଚିମ ସାଗର ତଟରେ ମେଲି ଦିଆଯାଇଥିବା ଶ୍ରୀକୃଷ୍ଣଙ୍କର ଦାହ ହୋଇଥିବା ଶରୀର ଅବଶିଷ୍ଟାଂଶ ଦାରୁରେ ପରିଣତ ହେବା ଏବଂ ତାହା ସ୍ୱର୍ଗଶିଳ୍ପୀଙ୍କ ଦ୍ୱାରା ତିନି ମୂର୍ତ୍ତିରେ ରୂପାନ୍ତରିତ ହେବା ଲୌକିକ ବିଶ୍ୱାସକୁ କବି ଦୃଢ଼ ରୂପ ଦେଇଛନ୍ତି । ଯଦି ମୋଟାମୋଟି ଭାବରେ ପରୀକ୍ଷଣ କରାଯାଏ ତେବେ ସହଜରେ ଦେଖାଯିବ ଯେ, ଜଣେ ସରଳ, କୃଷିକାରୀ, କଠୋର ପରିଶ୍ରମୀ, ସାଧାରଣ ଦୁଃଖ ଜଞ୍ଜାଳଗ୍ରସ୍ତ ଜଗନ୍ନାଥ ମନ୍ଦିରର ଧ୍ୱଜା ପଞ୍ଚକୋଶୀ ଠାରୁ ଦେଖି ଯେମିତି ବ୍ୟାକୁଳ ହୋଇ ଉଠେ, ବଡ଼ଦାଣ୍ଡର ଧୂଳିସ୍ପର୍ଶ କରି ଯେମିତି କୃତ କୃତ୍ୟ ହୋଇଉଠେ ସାରଳାଦାସ ତଦ୍ରୂପ ଲୋକାଗ୍ରହରେ ମୋହାଚ୍ଛନ୍ନ ହୋଇ ଭକ୍ତ ବିଶ୍ୱାସର କୈବଲ୍ୟରେ ଓତପ୍ରୋତ ହୋଇଛନ୍ତି । ପୁଣି କହି ରଖିବାକୁ ପଡ଼ୁଛି ଜଣେ ଦ୍ରଷ୍ଟା-ସ୍ରଷ୍ଟା ଭାବରେ ତାଙ୍କ କାବ୍ୟ ସୃଷ୍ଟି ଭଙ୍ଗୀ ବାଇଶି ପାହାଚର ପାର୍ଥକ୍ୟ ଦୂରକରି ମହାପ୍ରଭୁ ଜଗନ୍ନାଥଙ୍କର ଯେତିକି ନିକଟତର ହୋଇଛି, ଅସାଧାରଣ ଧର୍ମମତ, ପାଣ୍ଡିତ୍ୟ, ବିଭିନ୍ନ ବୁଦ୍ଧି ଦର୍ଶନର ବିସ୍ମିତମାନସ ସତ୍ତ୍ୱେ ସେଇଭଳି ଜଗନ୍ନାଥଙ୍କ ପାଖରେ ଦୃଢ଼ଭାବରେ ସମର୍ପିତ ହୋଇଛି ତାଙ୍କର ହୃଦୟ ।

ସାରଳା ଦାସ ଲେଖନୀ ଧାରଣ କଲାବେଳକୁ ଜଗନ୍ନାଥ ସମ୍ପର୍କିତ ଧାରଣା ଏବଂ ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ ଲାଭ କରିପାରିଥିଲେ ଏଥିରେ ତର୍କର ପ୍ରଶ୍ନ ନାହିଁ । ସ୍କନ୍ଦ ପୁରାଣର ନୀଳାଚଳ କ୍ଷେତ୍ର ବର୍ଣ୍ଣନା ଏବଂ ଜଗନ୍ନାଥ ବିଗ୍ରହ ପ୍ରତିଷ୍ଠାକୁ ସାରଳା-ଦାସ ବହୁଗୁଣିତ କରି କଳ୍ପନାର ପୁଟ ଦେଇ ହରିବଂଶ ପର୍ବରେ ,ବର୍ଣ୍ଣନା କରିଛନ୍ତି । କିନ୍ତୁ ଜଗନ୍ନାଥ ଠିକ୍ କ'ଣ ତାହା ତାଙ୍କ ମୋହାଚ୍ଛନ୍ନ ପାଠକ ସ୍ଥିର କରିପାରେ ନାହିଁ । ଜଗନ୍ନାଥ ବୋଧିଦ୍ରୁମ କିମ୍ବା ଶବରୀ ନାରାୟଣ, ଅଥବା ଧବଳୀ ପର୍ବତ ଉପରେ ଥିବା ଅଶ୍ୱତ୍ଥ କିମ୍ବା ତା'ଠୁ ଭିନ୍ନ ବୌଦ୍ଧ-ବୈଷ୍ଣବ ଚେତନା ସମ୍ଭୂତ ବିଗ୍ରହ ଅଥବା ଖୋଦ୍ ଜ୍ଞାନ ଏ ବିଷୟରେ କୌଣସି ନିର୍ବିବାଦ ସତ୍ୟର ପ୍ରତିଷ୍ଠା ହୋଇ ନାହିଁ ।

"ଦେଖିଲେ ପ୍ରତକ୍ଷେ ବିଷ୍ଣୁ ପ୍ରତିମା ତିନିମୂର୍ତ୍ତି
କର ଚରଣ ନାହିଁ ମହା ବଉଦ ଜ୍ୟୋତି ।"

× + ×

ବଳଭଦ୍ର, ସୁଭଦ୍ରା, କୃଷ୍ଣ ତିନିରୂପ
ବୁଦ୍ଧ ନାରାୟଣ ଏହା କରିବ ସ୍ୱରୂପ ।
(ବନପର୍ବ)

ଏବେ ମଧ୍ୟ ଜନଶ୍ରୁତିରେ ବିରାଜମାନ ଯେ, ସାରଳାଦାସ ତାଙ୍କ ରଚନାବଳୀର ସ୍ୱୀକୃତି ଲାଗି ପୁରୀସ୍ଥିତ ମୁକ୍ତିମଣ୍ଡପ ପଣ୍ଡିତ ସଭାର ଅନୁଗ୍ରହ ପ୍ରାର୍ଥୀ ହୋଇଥିଲେ । ରାଜଦର୍ଶନ ହେଉ ବା ବ୍ରହ୍ମଚର୍ଯ୍ୟା ହେଉ ନୀଳାଚଳକୁ ବହୁବାର ଯାତାୟତ କରିଥିଲେ । ଜଗନ୍ନାଥ ଦର୍ଶନକୁ ପ୍ରତ୍ୟକ୍ଷୀଭୂତ କରିଥିଲେ । କେବଳର ଭାବ (କୈବଲ୍ୟ)କୁ ଅଙ୍ଗୀକାର କରିଥିଲେ ଏବଂ ଗ୍ରନ୍ଥ ରଚନାରେ ପ୍ରବୃତ୍ତ ହୋଇ ଥିଲେ । ସାରଳା ଠାକୁରାଣୀ ବର୍ତ୍ତମାନ ପରିପ୍ରେକ୍ଷୀରେ ଓଡ଼ିଶାର ଧର୍ମ; ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ଯେଉଁଭଳି ଅଧିଷ୍ଠିତା ହୋଇଛନ୍ତି ସାରଳାଦାସଙ୍କ ସମୟକୁ ତା ହେବାକୁ କିଛି ଉଣା ଥିଲା ନିଶ୍ଚୟ ।

ଉପରୋକ୍ତ ଉଦ୍ଧୃତି ତୁଲ୍ୟ ବହୁ ପଦୋଦ୍ଧାର କରି ପ୍ରମାଣ କରି ହେବ ଯେ ସାରଳା ସାହିତ୍ୟରେ ଶାକ୍ତ ଭାବଧାରା ସାଙ୍ଗକୁ ବୈଷ୍ଣବ ଧର୍ମ ଧାରଣା ସାମନ୍ତରାଳ ଭାବରେ ଅଗ୍ରଗତି କରିଛି । ରାଧାକୃଷ୍ଣ ହୁଏତ ଗୌଣ କିନ୍ତୁ ଜଗନ୍ନାଥ ମହତ୍ତ୍ୱପୂର୍ଣ୍ଣ ଭାବରେ ପ୍ରକଟିତ । ସାରଳାଙ୍କ ତିରୋଧାନ ପରେ ଯେଉଁ ଗ୍ରନ୍ଥ ସାହିତ୍ୟ ସୃଷ୍ଟି ହେଲା ତାର ବୀଜ ସାରଳା ସାହିତ୍ୟରେ ହିଁ ନିହିତ ।

[ପରବର୍ତ୍ତୀ ସଂଖ୍ୟାରେ ଶୈବ ଚେତନା ଓ ଯୋଗାଗ୍ରର ସାରଳା ଦାସଙ୍କ ଅନ୍ୟତମ ଦୃଷ୍ଟିକୋଣ ପ୍ରକାଶିତ ହେବ । ]



---

ବ୍ରହ୍ମ ଦର୍ଶନ ବା ଆତ୍ମଜ୍ଞାନଲାଭ, ବିଦ୍ୱାନ ପଣ୍ଡିତ ଓ ଉପାଧିଧାରୀ ବଡ଼ ବଡ଼ ମହାପୁରୁଷମାନଙ୍କ ଦ୍ୱାରା ଯାହା ଜନ୍ମ ଜନ୍ମାନ୍ତରେ ହୋଇ ନଥାଏ, ଧ୍ରୁବ, ପ୍ରହଲ୍ଲାଦ ପରି ଶିଶୁ ମଧ୍ୟ ଅତି ସହଜ ଓ ସରଳ ଉପାୟରେ ତାହା ଲାଭ କରିପାରେ······ ।

# ସାରଳାଙ୍କ ଧର୍ମ ଦର୍ଶନ

ଅଧ୍ୟାପକ— **ଶ୍ରୀ ଉମାକାନ୍ତ ନାୟକ**
ଆଦିକବି ସାରଳାଦାସ ମହାବିଦ୍ୟାଳୟ, ତିର୍ତ୍ତୋଲ

"ଧର୍ମାନୁଭୂତ ମଣିଷର ହସ, କାନ୍ଦ, ପ୍ରେମ ଓ କ୍ଷମାଭଳି ଏକ ମନୋବୃତ୍ତି—
ରାଧାକୃଷ୍ଣନ ।"

ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ଧାର୍ମିକ ଚେତନା ଏପରି ମିଶି ଯାଇଛି ଯେ ସହଜରେ କହି ହୁଏନା ଧର୍ମର ପ୍ରାଚୀରକୁ ଆଶ୍ରାକରି ଖାଲି ମଧୁମାଳତୀ ଭଳି ସାହିତ୍ୟ ମୁଣ୍ଡଟେକି ଉଠିଛି ? ସାହିତ୍ୟର ଧମନୀ ଭିତରେ ଧର୍ମର ନିର୍ଯ୍ୟାସ ପ୍ରବାହିତ ହେଉଛି ? କବି ନାରାୟଣ ନନ୍ଦ ଅବଧୂତ ସ୍ୱାମୀଙ୍କର 'ରୁଦ୍ର-ସୁଧାନିଧି' ଅନାମ କବିଙ୍କର 'ସୋମନାଥ ବ୍ରତ କଥା' ଜଗନ୍ନାଥ ଦାସଙ୍କର 'ତୁଳାଭିଣା' କିମ୍ବା ଭୀମଭୋଇଙ୍କର 'ସ୍ତୁତି ଚିନ୍ତାମଣି' ଗ୍ରନ୍ଥ ଧର୍ମ ଦର୍ଶନର ପ୍ରସାର ଏବଂ ପ୍ରଚାର ପାଇଁ ଲିଖିତ ହୋଇଥିଲେ ହେଁ, ଏଥିରେ ଥିବା କଳ୍ପନା ପ୍ରବଣତା, ବର୍ଣ୍ଣନା ବିଳାସ, ଅଳଙ୍କାରର ସୂକ୍ଷ୍ମ ପ୍ରୟୋଗ, ସଙ୍ଗୀତର ମାଧୁର୍ଯ୍ୟ ଏବଂ ଭାବର ସୌକୁମାର୍ଯ୍ୟ ଏହାକୁ ଯେପରି ସାହିତ୍ୟ ବୃତ୍ତ ଭିତରକୁ ଟାଣି ଆଣିଥାଏ । କବି ଦୀନକୃଷ୍ଣଙ୍କର 'ରସକଲ୍ଲୋଳ' ଅଭିମନ୍ୟୁଙ୍କର 'ବିଦଗ୍ଧ ଚିନ୍ତାମଣି' କବିସୂର୍ଯ୍ୟଙ୍କର 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ପ୍ରଭୃତି ଗ୍ରନ୍ଥରେ ରାଧାକୃଷ୍ଣଙ୍କର ପ୍ରେମର ବିନ୍ୟାନ ଏହି ଗ୍ରନ୍ଥ ସମୂହକୁ ସେପରି ଧର୍ମ ଗ୍ରନ୍ଥରେ ପରିଣତ କରିଥାଏ । କିନ୍ତୁ ବାସ୍ତବ ଅର୍ଥରେ ଦେଖିବାକୁ ଗଲେ—ଧର୍ମଗ୍ରନ୍ଥ ମଧ୍ୟରେ ସାହିତ୍ୟର ଆଙ୍ଗିକ ଏବଂ ଆତ୍ମିକ ନିହିତ ରହିଥିଲେ ଏହା ଯେ ସାହିତ୍ୟ ହେବ ନାହିଁ—ଯେମିତି ଠିକ୍ ନୁହେଁ···ସାହିତ୍ୟ ଗ୍ରନ୍ଥ ମଧ୍ୟରେ ମାନବୋତ୍ତର ଚରିତ୍ରର ସମାବେଶ ଘଟିଲେ କିମ୍ବା ବିଭିନ୍ନ ଦେବାଦେବୀଙ୍କର

ମହାତ୍ମ୍ୟ ବର୍ଣ୍ଣନା କରାଗଲେ ଏହା ଧର୍ମଗ୍ରନ୍ଥ ହୋଇପିବ—ସେମିତ ଠିକ୍ ନୁହେଁ । ଏହ ପୃଷ୍ଠଭୂମି ଉପରେ ସାରଳାଦାସଙ୍କ ଧର୍ମ ଦର୍ଶନକୁ ଆଲୋଚନା କରାଯାଇପାରେ ।

ଓଡ଼ିଆ ସାହିତ୍ୟର ପ୍ରାଣ ପ୍ରତିଷ୍ଠାତା ସାରଳା ଦାସଙ୍କ କାବ୍ୟକୃତ ମଧ୍ୟରେ ଶକ୍ତିଙ୍କ ମହାତ୍ମ୍ୟର ବହୁଳ ପ୍ରୟୋଗ ଦେଖି ଏବଂ କବ ବାରମ୍ବାର ନଜକୁ ସାରଳାଙ୍କର ପୁତ୍ର ରୂପେ ବର୍ଣ୍ଣନା କର ଥିବାରୁ ସମାଲୋଚକମାନେ ସାରଳା ଦାସଙ୍କୁ ଶାକ୍ତ ଧର୍ମାବଲମ୍ବୀ ରୂପେ ଗ୍ରହଣ କରଥାନ୍ତି । କନ୍ତୁ ସାରଳାଙ୍କ ବର୍ଣ୍ଣନାରେ କେବଳ ଯେ ଶକ୍ତିଙ୍କର ବର୍ଣ୍ଣନା ରହଛି ତାହା ନୁହେଁ । ସାରଳାଙ୍କର ଆବର୍ଭାବ ଅର୍ଥାତ ପଞ୍ଚଦଶ ଶତାବ୍ଦୀ ବେଳକୁ ଓଡ଼ଶା ମାଟିରେ ଯେଉଁସବୁ ଧର୍ମର ସ୍ରୋତ ପ୍ରବାହତ ହୋଇ ଯାଇଥିଲା/ହେଉଥିଲା, ସେ ସମସ୍ତ ଦେବତାଙ୍କର ପ୍ରଶସ୍ତି ସହତ ସେହସବୁ ଧର୍ମର ସ୍ୱର ଗୁଞ୍ଜରତ ହୋଇ ଉଠିଛି ସାରଳାଙ୍କ ଲେଖନୀ ମୂନରେ । ନମ୍ନ ଆଲୋଚନାରୁ ଏକଥା ସ୍ପଷ୍ଟ ହୋଇ ଉଠେ ।

ପ୍ରାଚୀନ ଉତ୍କଳ ଥିଲା ବୌଦ୍ଧ ଧର୍ମର ଏକ ବଶିଷ୍ଟ ପୀଠ । ବୌଦ୍ଧ ଧର୍ମଗ୍ରନ୍ଥ 'ଦାଠାବଂଶ'ରେ ବୁଦ୍ଧଦନ୍ତ କଳଙ୍ଗ ଦେଶରେ ପୂଜା ପାଉଥିଲା ବୋଲ କୁହାଯାଇଛି । ଏହ ଦେଶ ମଧ୍ୟ ସେଦନ ଚଣ୍ଡାଶୋକଙ୍କୁ ଧର୍ମାଶୋକରେ ପରଣତ କରଥିଲା । ବୌଦ୍ଧ ଧର୍ମର ଦର୍ଶନରେ ଅନୁପ୍ରାଣିତ କର । ଖ୍ରୀଷ୍ଟପୂ ଏକାଦଶ ଶତାବ୍ଦୀ ପର୍ଯ୍ୟନ୍ତ ବୌଦ୍ଧ ଧର୍ମ ତାର ବର୍ଦ୍ଧତ ଏବଂ ବପର୍ଯ୍ୟସ୍ତ ଦର୍ଶନକୁ ଧର ବରାଜମାନ କରୁଥିଲା । ସାରଳାଙ୍କ କାଳକୁ ବୌଦ୍ଧ ଧର୍ମ ଓଡ଼ଶା ମାଟିରେ ନଥିଲେ ହେଁ ଓଡ଼ିଆ ସମାଜରେ ଏହ ଧର୍ମର କଛଟା ପ୍ରଭାବ ରହଥିଲା । ତେଣୁ ସାରଳା ଦାସ ମହାଭାରତ ବୌଦ୍ଧ ଦର୍ଶନର ଅନ୍ୟତମ ଦଗ ଶୂନ୍ୟ ଦର୍ଶନର ସୁନ୍ଦର ଚର୍ଚ୍ଚା କର ଲେଖିଛନ୍ତି—

ଆଦ୍ୟରୁ ଶୂନ୍ୟହିଁ ଜାତ ଶୂନ୍ୟରୁ ପବନ
ପବନରୁ ଜାତ ଯୋଗ ପୁରୁଷ ସମାନ ।

ଯୋଗ ପୁରୁଷରୁ ଜାତ ହେଲା ଗାୟତ୍ରୀ
ଏହା ତହୁଁ ଉପୁଜିଲା ମହାମନ୍ତ୍ର ଗୃର ।
(ଆଦିପର୍ବ)

କେବଳ ବୌଦ୍ଧ ଧର୍ମର ଦର୍ଶନ ନୁହେଁ ସାରଳା ଦାସ ଶିବ, ସୂର୍ଯ୍ୟ, ଗଣପତି, ବିଷ୍ଣୁ, ଜଗନ୍ନାଥ ପ୍ରଭୃତି ଦେବତାଙ୍କର ସ୍ତୁତି ଗାନ କରିବା ସଙ୍ଗେ ସଙ୍ଗେ ସେହି ଦେବତାଙ୍କୁ ନେଇ ଗଢ଼ି ଉଠିଥିବା ଧର୍ମଦର୍ଶନର ଚର୍ଚ୍ଚା କରିଛନ୍ତି । କବି ସୂର୍ଯ୍ୟଙ୍କୁ ପରଂବ୍ରହ୍ମ, ନିରାକାର, ନାରାୟଣ, ଈଶ୍ୱର, ପରମାନନ୍ଦ, ଗୋପାଳ, ଅନନ୍ତ, ନିରାକାର ଆଦି ଆଖ୍ୟା ପ୍ରଦାନ କରିଛନ୍ତି । କବିଙ୍କ ଦୃଷ୍ଟିରେ ସେ ସୃଷ୍ଟି ଓ ସଂହାରର ହେତୁ । ସୂର୍ଯ୍ୟ ସ୍ୱୟଂ ସୃଷ୍ଟିକର୍ତ୍ତା ତାଙ୍କର ଆଦେଶରେ ବ୍ରହ୍ମା ସୃଷ୍ଟି ସର୍ଜନା କରିଛନ୍ତି—

"ଆଜ୍ଞା ଦେଲୁ ସ୍ୱାମୀ ଏହି ପୁରୁଷଙ୍କୁ ଚାହିଁ
ଯାଅ ବେଗେ ତୁମ୍ଭେ ନବ ସୃଷ୍ଟିକି ଭିଆଇ ।"
(ସଭାପର୍ବ)

ସାରଳାଙ୍କ ଦୃଷ୍ଟିରେ ଶିବ ହେଉଛନ୍ତି ସିଦ୍ଧିଦାତା, ଭକ୍ତ ବତ୍ସଳ, ପାପତାପ ହାରୀ । କବି କହନ୍ତି ଶିବଙ୍କୁ ଦର୍ଶନ କଲେ ସର୍ବବିଧ ପାପ ବିଦୂରିତ ହୁଏ—

ଗୋ ହତ୍ୟା ସ୍ତ୍ରୀ ହତ୍ୟା ବ୍ରହ୍ମହତ୍ୟା ସୁରାପାନ
ତୋର ଦର୍ଶନେ ସକଳ ପାତକ ଦହନ
ଯେହୁ ଏକବାର ତୋତେ ନୟନେ ଦେଖିବେ
ସହସ୍ର ଜନ୍ମର ପାପ ଦୁଃସହ ହରିବେ ।
(ଆଦିପର୍ବ)

ଗଣେଶଙ୍କୁ କବି ଯୋଗୀଶ୍ରେଷ୍ଠ, ମହାବ୍ରହ୍ମ, ଲୋକେଶ, ସର୍ବ, ବିଘ୍ନରାଜ, ମଙ୍ଗଳଦାତା, ଅମଙ୍ଗଳ ନାଶକାରୀ, ସିଦ୍ଧିଦାତା ବୋଲି ସ୍ତୁତି କରିଛନ୍ତି ।

"ଅମଙ୍ଗଳ ନାଶକାରୀ ଜୟ ଗଜାନନ
ଯୋଗେଶ ପରମାନନ୍ଦ ପାର୍ବତୀ ନନ୍ଦନ ।"
(ଖିଷ୍ଣୁପର୍ବ)

ଉତ୍କଳର ସମ୍ରାଟ ଜଗତର ନାଥ ଜଗନ୍ନାଥଙ୍କୁ କବି ବୁଦ୍ଧ, ନାରାୟଣ, ବାସୁଦେବ, କେଶବ, ଆଦି ନାମରେ ଯେ କେବଳ ସ୍ତୁତି କରିଛନ୍ତି ତାହା ନୁହେଁ ମହାଭାରତୀୟ ଚରିତ ଶ୍ରୀକୃଷ୍ଣଙ୍କର ପରବର୍ତ୍ତୀ ଅବତାର ଜଗନ୍ନାଥ ବୋଲି କବି ପ୍ରତିପାଦନ କରିଛନ୍ତି । ସାରଳା ମହାଭାରତର ଶେଷ ପର୍ଯ୍ୟନ୍ତ "ଜଗନ୍ନାଥ ଚରିତ"ରେ ପୂର୍ଣ୍ଣ । ତେଣୁ ଉତ୍କଳ ବ୍ୟାସ ସାରଳାଙ୍କର ଜଗନ୍ନାଥ ଭକ୍ତିର ଏହା ଏକ ପ୍ରକୃଷ୍ଟ ପରିଚୟ ।

ଖ୍ରୀ:ପୂ: ଶତାବ୍ଦୀ ଠାରୁ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ବିଷ୍ଣୁ ପୂଜା ଓଡ଼ିଶାରେ ପ୍ରଚଳିତ ଥିଲା । ବୈଷ୍ଣବ ଧର୍ମର ପ୍ରାଚୀନ ନାମ ଭାଗବତ ଧର୍ମ । ଭାରତର ବିଭିନ୍ନ କୋଣରେ ଭିନ୍ନ ଭିନ୍ନ ସମୟରେ ମଥା ଟେକିଥିଲା । ବୈଷ୍ଣବ ଧର୍ମଚେତନାର ଧାରା ମଧ୍ୟ ଓଡ଼ିଶାରେ ପ୍ରବେଶ କରିଥିଲା । ଷୋଡ଼ଶ ଶତାବ୍ଦୀ ଏବଂ ପରବର୍ତ୍ତୀ କାଳରେ ଯଦିଓ ବୈଷ୍ଣବ ଧର୍ମ ଓଡ଼ିଶାରେ ସୁ-ସଂଗଠିତ ରୂପ ଗ୍ରହଣ କରିଛି । ସାରଳା ଦାସଙ୍କ ରଚନାବଳୀରେ ବୈଷ୍ଣବ ଧର୍ମର ବୀଜ ନିହିତ ରହିଛି ।

ଉପରୋକ୍ତ ଆଲୋଚନାରୁ ଜଣାଯାଏ ସାରଳା ଦାସଙ୍କ ରଚନାବଳୀରେ କେବଳ ଯେ ଶକ୍ତିଙ୍କର ମହାତ୍ମ୍ୟ ବର୍ଣ୍ଣନା ରହିଛି ତାହା ନୁହେଁ—ବରଂ ସାରଳା ତତ୍କାଳୀନ ସମାଜରେ ପ୍ରତିଷ୍ଠା ଲାଭ କରିଥିବା ସମସ୍ତ ଦେବଦେବୀଙ୍କର ଗୁଣଗାନ କରିଛନ୍ତି । ସାରଳାଙ୍କ ରଚନାରେ ଶକ୍ତିଙ୍କର ମାହାତ୍ମ୍ୟ ବହୁଳ ବର୍ଣ୍ଣନା ହେବାର ଅନ୍ୟ ଏକ କାରଣ ହୋଇପାରେ କବିଙ୍କର ଜନ୍ମପୀଠ-ଝଙ୍କଡ଼- ଯେଉଁସ୍ଥାନର ଆରାଧ୍ୟା ଦେବୀ ହେଉଛନ୍ତି ବାକ୍‌ଦେବୀ ଶାରଳା । ଶାରଳା ପୀଠରେ କବିଙ୍କର ଜୀବନ କାଳ ଅତିବାହିତ ହୋଇ ଥିବାରୁ କବିଙ୍କର ବିଶ୍ୱାସ ବାକ୍‌ଦେବୀଙ୍କ ଠାରେ କେନ୍ଦ୍ରୀଭୂତ

ହୋଇଥିବ । ତେଣୁ ତାଙ୍କ ବର୍ଣ୍ଣନାରେ ଶକ୍ତିଙ୍କର ବର୍ଣ୍ଣନା ବହୁଳ ହେବା ସ୍ୱାଭାବିକ ।

ସାରଳାଦାସ ଶିବଙ୍କର ମହାତ୍ମ୍ୟ ବର୍ଣ୍ଣନା କରି ଯେପରି ଶୈବ ନୁହଁନ୍ତି, ଶକ୍ତିଙ୍କର ମହିମା ବର୍ଣ୍ଣନାକରିସେହିପରି ଶାକ୍ତ ନୁହଁନ୍ତି ବରଂ ଜଣେ ନୈଷ୍ଠିକ ହିନ୍ଦୁ— ଯିଏ ଏକାଧିକ ଦେବଦେବୀଙ୍କୁ ପୂଜା କରିଛନ୍ତି । ତେଣୁ ସାରଳାଦାସଙ୍କର ଧର୍ମ ଦର୍ଶନ କୌଣସି ଗୋଟିଏ ଧର୍ମ ଚେତନାର ବଳୟ ଭିତରେ ଆବଦ୍ଧ ନ ରହି, ସକଳ ଧର୍ମ ଚେତନାର ଊର୍ଦ୍ଧ୍ୱରେ ଥିବା ମାନବବାଦୀ ଧର୍ମ ରୂପରେ ଆତ୍ମ ପ୍ରକାଶ କରିଛି ।

ସାରଳା ଦାସ ଗୃହୁଁଥିଲେ ଏକ ସୁସ୍ଥ ସମାଜ । ଯେଉଁ ସମାଜରେ ମଣିଷ ବଞ୍ଚିବ ସୁଖ-ଶାନ୍ତିର ସମତଳରେ । ଯେଠି ରାଜାର କର୍ତ୍ତବ୍ୟ ହେବ ପ୍ରଜା ଶାସନ ଓ ପ୍ରଜାମାନଙ୍କର ମଙ୍ଗଳ ବିଧାନ—

ନ୍ୟାୟେ ପ୍ରଜାଙ୍କୁ ପାଳିଲେ ଇନ୍ଦ୍ର କରେ ବୃଷ୍ଟି
ରାଜାର ପାଳନେ ସିନା ରକ୍ଷା ହୁଏ ସୃଷ୍ଟି ।
(ଶାନ୍ତିପର୍ବ)

ସ୍ତ୍ରୀର କର୍ତ୍ତବ୍ୟକୁ ସେ ସ୍ୱାମୀ ସେବା ରୂପରେ ଗ୍ରହଣ କରିଛନ୍ତି । ସ୍ୱାମୀର ଆନନ୍ଦରେ ସ୍ତ୍ରୀ ଆନନ୍ଦିତ ହେବା ବିଧେୟ । ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କର ମୃତ୍ୟୁ ପରେ ବଂଶ ରକ୍ଷା କରିବାକୁ ସୋମବଂଶର ନାରୀ ବ୍ୟାସଦେବଙ୍କ ସହ ସହବାସ କରିଛନ୍ତି । କିନ୍ତୁ ସାରଳାଦାସ ଏହି କାର୍ଯ୍ୟକୁ ଘୃଣ୍ୟ ଦୃଷ୍ଟିରେ ଦେଖୁଥିବାରୁ, ସୋମବଂଶର ବଧୂମାନେ ନିଜକୁ ଧିକ୍କାର କରିବା ସଙ୍ଗେ ସଙ୍ଗେ ନଦୀରେ ଝାସ ଦେଇ ଆତ୍ମହତ୍ୟା କରିଛନ୍ତି । କେବଳ ଏତିକି ନୁହେଁ କୁନ୍ତୀ ପଣ୍ଡୁଙ୍କର ଅଭିଶାପ ଦୃଷ୍ଟିରୁ 'ଜପାମାଳା' ସାହାଯ୍ୟରେ ପୁତ୍ରସନ୍ତାନ ଜନ୍ମ କରୁଥିଲେ ହେଁ ଏହି କାର୍ଯ୍ୟକୁ ହୀନ ଦୃଷ୍ଟିରେ ଦେଖି ନିଜକୁ ଧିକ୍କାର କରିଛନ୍ତି । ସାରଳା ଦାସଙ୍କ କାଳକୁ ଧର୍ମ ନାମରେ ସମାଜରେ ଯେଉଁ ଭ୍ରଷ୍ଟାଚାର ଚାଲିଥିଲା ତାର ନିନ୍ଦା କରିବା ପାଇଁ

'ଖଲ୍ୟକାର' ଜନ୍ମ ବୃତ୍ତାନ୍ତ ପ୍ରସଙ୍ଗର ଅବତାରଣା କରିଛନ୍ତି । ଭ୍ରଷ୍ଟ ସହଜିଆ ସାଧକ ମାନଙ୍କର 'ସହଜ ସୁଖ' ନାମରେ ଚାଲିଥିବା ବ୍ୟଭିଚାରକୁ କବି ନିନ୍ଦା କରିଛନ୍ତି ଏବଂ ତାର ପ୍ରତିରୋଧ ପାଇଁ ଶ୍ରୀକୃଷ୍ଣଙ୍କର ଅନୁଶୋଚନା ପ୍ରକାଶ କରିଛନ୍ତି ।

"ପୋଡ଼ୁ ପୋଡ଼ୁ ପରଦାର ଆଜଠାରୁ ନୋହୁ
ଯେ କରିବ ପରଦାର ପ୍ରାଣ ତାର ଯାଉ ।"

ତେଣୁ କୁହାଯାଇ ପାରେ ଯେ, ସାରଳା ଦାସ ସମାଜ ଜୀବନକୁ ବ୍ୟଭିଚାରର ଗ୍ରସ୍ତ ଅଧୋପତନରୁ ରକ୍ଷା କରିବା ପାଇଁ ନୂତନ ଆଭିମୁଖ୍ୟ ଆଣି ସମାଜରେ ସଞ୍ଜମର ଆଦର୍ଶ ପ୍ରତିଷ୍ଠା କରିଛନ୍ତି ।

ସାରଳାଦାସ ଥିଲେ ଜଣେ ବିପ୍ଳବୀ କବି । ସେ କେବଳ ସଂସ୍କୃତାଭିମାନୀ ପଣ୍ଡିତମାନଙ୍କର ଅଭିମାନକୁ ଚୂର୍ଣ୍ଣ କରି ନାହାନ୍ତି ଓଡ଼ିଆ ଭାଷାର ପ୍ରଥମ ମହାକାବ୍ୟ 'ମହାଭାରତ' ସୃଷ୍ଟି କରି ପରନ୍ତୁ ସମାଜରେ ପ୍ରଚଳିତ ଧର୍ମଚେତନାକୁ ସମ୍ମାନ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ଧର୍ମନାମରେ ଚାଲିଥିବା ବ୍ୟଭିଚାରକୁ ସମାଲୋଚନା କରିଛନ୍ତି ।

---

ଯେପରି ନଦନଦୀ ଜଳ ସମୁଦ୍ର ପଡିଲେ ମଧ୍ୟ ସମୁଦ୍ର ବଢ଼େ ନାହିଁ ସେହିପରି ଜ୍ଞାନୀର ଧନ ହେଲେ ମଧ୍ୟ ସେଥିରେ ସେ ଇଚ୍ଛା ନକରି ସବୁବେଳେ ଶାନ୍ତିରେ ରହିଥାଏ ମାତ୍ର କାମ ଭୋଗରେ କେବେବେଳେ ମଧ୍ୟ ଶାନ୍ତି ନାହିଁ । "ଗୀତା"



# ଓଡ଼ିଆ ସାହିତ୍ୟରେ ଶାକ୍ତ ଓ ଶୈବାଚାରର ପ୍ରବାହ

ରତ୍ନାକର ଚଇନି

**ପ**ରକୀୟା ଯୌନ-ଚେତନାର ପ୍ରାବଲ୍ୟ ବୌଦ୍ଧ ଯୁଗରେ ଯେପରି ନିନ୍ଦିତ ଓ ଅଧଃପତିତ ରୂପଧାରଣ କରିଥିଲା, ଜଣା ପଡ଼େନା ହଠାତ୍ କେମିତି ସ୍ୱକୀୟା ଭିତ୍ତିଭୂମି ଉପରେ ଶିବ-ପାର୍ବତୀ, ରାମ-ସୀତା ଆଦିର ଧର୍ମାଚାର ସ୍ୱରୂପ ଧାରଣ କରି ସେହିଭଳି ଲୋକପ୍ରିୟ ହୋଇ ଉଠିଲା । ଏଇ ଲୋକପ୍ରିୟତା ପରୋକ୍ଷ ଭିତ୍ତି ସ୍ଥାପନ କରିଥିଲା କିଛିକାଳ ପାଇଁ । ପ୍ରାଧାନ୍ୟ ବିସ୍ତାର କରିଥିବା ନାମ ଧର୍ମରୁ । ମହାଯାନୀ ବୌଦ୍ଧଙ୍କର ବୋଧିସତ୍ତ୍ୱ ଓ ପ୍ରଜ୍ଞାପାରମିତା, ବଜ୍ରଯାନୀଙ୍କର ମଣି ଓ ପଦ୍ମ, ତାନ୍ତ୍ରିକଙ୍କର ଅବଲୋକିତେଶ୍ୱର ଓ ତାର । ଏହି ଯୁଗରେ ଶୈବ ପନ୍ଥୀଙ୍କର ଶିବ-ପାର୍ବତୀ ପାଲଟି-ଗଲେ । ବଜ୍ରଯାନୀଙ୍କର ମଣି ବା କୁଳିଶ ଶୈବ ଧର୍ମରେ ଲିଙ୍ଗ ପୂଜାର ରୂପ ଗ୍ରହଣ କଲା । ସ୍ତୁପ ବା ସ୍ତମ୍ଭ ରୂପରେ ଥିବା ବୌଦ୍ଧ ସଙ୍କେତ ଲିଙ୍ଗରୂପୀ ଶିବରେ ପରିଣତ ହୋଇଗଲେ । ବୌଦ୍ଧ ସ୍ତମ୍ଭ ଶିବଲିଙ୍ଗରେ ପରିଣତ ହେବାର ଉଦାହରଣ ହେଉଛି ଭୁବନେଶ୍ୱରସ୍ଥ ମେଘେଶ୍ୱର ମନ୍ଦିରର ଶିବଲିଙ୍ଗ । ପୁଣି ଏହି ସମୟରେ ଶାକ୍ତ ତନ୍ତ୍ରର ତାନ୍ତ୍ରିକ ବିବର୍ତ୍ତନର ଫଳ ସ୍ୱରୂପ ଶିବଙ୍କ ସହ ଶକ୍ତିର ସଂଯୋଗ ପ୍ରାଧାନ୍ୟ ବିସ୍ତାର କଲା । ଶିବ ଓ ଶକ୍ତିଙ୍କର ଲୌକିକ ମିଥୁନ ତଥା ତାନ୍ତ୍ରିକ ବିଶ୍ୱାସର ଉପଭୂମିରେ ଅସଂଖ୍ୟ ରୂପ ଧାରଣ କଲା । ଶକ୍ତି ମନ୍ତ୍ରରେ ଜପର ନିୟମ ପାଇଁ କୁହାଯାଇଥିବା "ମାତୃ ଯୋନିଂ ପରିତ୍ୟଜ୍ୟ ବିହରେତ୍ ସର୍ବ ଯୋନିଷୁ"ର ଅର୍ଥ ଯେଉଁ କଦର୍ଥ ହୋଇ ପଡ଼ିଥିଲା, ତାହା ପୁଣିଥରେ ନିଜସ୍ୱତାକୁ ଫେରି ପାଇଲା । ଅର୍ଥାତ୍ ତର୍ଜମା କରାଗଲା, ଶକ୍ତିମନ୍ତ୍ର ଜପ କଲାବେଳେ ପ୍ରଥମ ଅଙ୍ଗୁଳି (ବୃଦ୍ଧାଙ୍ଗୁଳି)ର ଗଣ୍ଠିକୁ ଛାଡ଼ି ଅନ୍ୟ ସମସ୍ତଙ୍କୁ ଜପରେ ବ୍ୟବହାର କରାଯାଇ ପାରେ । ସେ ଯାହାହେଉ, କାଳକ୍ରମେ ନାଥଧର୍ମ ସାଙ୍ଗରେ ଏହି ଶୈବ୍ୟ ଚେତନା ଏକାକାର ହୋଇ ଯିବା ଫଳରେ

ଶିବ ପୁଣି ହୋଇ ଉଠିଲେ ନାଥମାନଙ୍କର ଉପାସ୍ୟ ଦେବତା; ଶୂନ୍ୟଦେବ, ନାଥ ନିରଞ୍ଜନ ।

ଓଡ଼ିଆ ନାଥ ସାହିତ୍ୟରେ ମାନବ ପାଇଁ ସଂସାର ତ୍ୟାଗୀ ହେବା ପାଇଁ ଯେଉଁ ବଇରାଗ୍ୟ ଧାରା ଦେଖା ଦେଇଥିଲା, ଶୈବ ଚେତନାରେ ତାହା ପୁଣି ସଂସାର ମୁଖୀ ହୋଇ ଉଠିଲା । ଏଥିରେ ଶିବ ପାର୍ବତୀଙ୍କର ବିବାହ, ଦାରିଦ୍ର୍ୟ ଜୀବନ ଓ ସ୍ୱର୍ଗୀୟ ସଂଯମ ପ୍ରଧାନ ଉପାଦେୟ ବସ୍ତୁ ଥିଲା । ଏଇଠି ଲକ୍ଷ୍ୟକଲେ ଜଣାପଡ଼େ ଯେ, ବହୁତ ଦିନ ପର୍ଯ୍ୟନ୍ତ ସାହିତ୍ୟ, ଜନ ଜୀବନ ଓ ଧର୍ମ ଧାରଣାରେ ଯେଉଁ ସାଧନା ବୈରାଗ୍ୟ ଓ ଯୌନ ବ୍ୟଭିଚାରର ପ୍ରାଧାନ୍ୟ ଲାଭ କରି ଆସିଥିଲା, ତାହା ଏହି ପର୍ଯ୍ୟାୟରେ ପ୍ରଥମଥର ପାଇଁ ଜୀବନ ଧର୍ମୀ ହୋଇ ଉଠିଲା । ଓଡ଼ିଆ ଶୈବ୍ୟ-ସାହିତ୍ୟକୁ ଅଧ୍ୟୟନ କଲେ ବୁଝି ହେବ, ସେମାନେ ସତେ ଯେପରି ଶିବ-ପାର୍ବତୀ ନୁହନ୍ତି । ଓଡ଼ିଶାର ପୁରି ପଲ୍ଲୀର ଯେକୌଣସି ଦୁଇଟି ସାଧାରଣ ନରନାରୀ । ଏଠି ସୂକ୍ଷ୍ମ ତତ୍ତ୍ୱର ଜଟିଳତା ନାହିଁ, ଆଧ୍ୟାତ୍ମିକ ରୂପକର ଦୁର୍ବୋଧତା ନାହିଁ,—ଅଛି ଜୀବନକୁ ଚହ୍ନିବାର ଅନୁପମ ଅଭିବ୍ୟକ୍ତି ।

ଓଡ଼ିଆ ଶୈବ ସାହିତ୍ୟ ମଧ୍ୟରୁ ନାରାୟଣାନନ୍ଦ ଅବଧୂତ ସ୍ୱାମୀଙ୍କର 'ରୁଦ୍ର ସୁଧାନିଧି' କେଉଁ ଏକ ଅଜ୍ଞାତ ଗଣକବି ଦ୍ୱାରା ରଚିତ । 'ସୋମନାଥ ବ୍ରତକଥା' ଓ 'ନାଗଲ ଚଉଠି କଥା' ଏବଂ ବିଷ୍ଣୁ ଦାସଙ୍କ ଦ୍ୱାରା ଲିଖିତ 'କଲସା ଚଉତିଶା' ବିଶେଷ ଉଲ୍ଲେଖଯୋଗ୍ୟ କୃତି । ରୁଦ୍ର ସୁଧାନିଧିର ସ୍ରଷ୍ଟାଙ୍କ ନାମକରଣରୁ ଭ୍ରମ ଜନ୍ମେ ଯେ, ସେ ପ୍ରକୃତରେ ଶୈବ ଥିଲେ ନା ବୈଷ୍ଣବ ? ମାତ୍ର ପ୍ରକୃତରେ ସେ ଶୈବ ଥିଲେ ଏବଂ 'ରୁଦ୍ର ସୁଧାନିଧି' ଗ୍ରନ୍ଥ ଯେ ଶିବ ମାହାତ୍ମ୍ୟ ପ୍ରଖ୍ୟାପକ ତାହା ଏହାକୁ ପାଠ କଲାପରେ ଜଣା ପଡ଼ିବ । ଏଥିରେ ବର୍ଣ୍ଣିତ ଅଛି ଗଣମାନଙ୍କର ବାସ୍ତବ ସଂଯମ ପରୀକ୍ଷା କରିବାକୁ ଶିବ ପାର୍ବତୀଙ୍କର ସହାୟତା ଲୋଡ଼ିଲେ । ପାର୍ବତୀ ତ୍ରୈଲୋକ୍ୟ ମୋହିନୀ ନାମକ ଏକ ଦିବ୍ୟ ସୁନ୍ଦରୀ କନ୍ୟା ଜନ୍ମ ଦେଲେ ଏବଂ ତାଙ୍କ ରୂପରେ ମୁଗ୍‌ଧ ହୋଇ ଅଭିନବ ଚୈତନ୍ୟ ନାମକ ଜନୈକ ଗଣ ଯୋଗ ଭ୍ରଷ୍ଟ ହେଲା । ଶେଷରେ ତ୍ରୈଲୋକ୍ୟ ମୋହିନୀ ଓ ଅଭିନବ ଚୈତନ୍ୟ ନରରୂପ ଧାରଣ

କରି ଧର୍ମବତରଣ କଲେ ଓ ପରିଶେଷରେ ପ୍ରଣୟ ଫାଶରେ ଆବଦ୍ଧ ହେଲେ । ଏଥିରୁ ଜଣାପଡ଼େ ଏହି ଅବଧୂତ ଭକ୍ତ ବାହାରେ ସଂସାର ତ୍ୟାଗୀ ହେଲେ ମଧ୍ୟ ଭିତରେ ଏକାନ୍ତ ସୌନ୍ଦର୍ଯ୍ୟ ପିପାସାସୁ ପ୍ରଣୟୀ ଥିଲେ । ଏହି ଗ୍ରନ୍ଥରେ ଓଡ଼ିଶାର ତତ୍‌କାଳୀନ ଜନ ମାନସ ଏବଂ ଧର୍ମ ଚେତନାର ସ୍ପଷ୍ଟ ପ୍ରତିଫଳନ ଦେଖିବାକୁ ମିଳେ ।

'ସୋମନାଥ ବ୍ରତକଥା' ଓ 'ନାଗଲ ଚଉଠି କଥା' ଗ୍ରନ୍ଥ ଦ୍ୱୟରେ ଶିବ ମହାତ୍ମ୍ୟର ବର୍ଣ୍ଣନା ଦେଖିବାକୁ ମିଳେ । ସେ ସମୟର ଜନ ହୃଦୟରେ ଶିବଙ୍କ ପ୍ରତି ଭକ୍ତି ଜାଗ୍ରତ କରିବା ଏବଂ ଶିବ ପୂଜାର ଆଗ୍ରହ ବିଧି ବର୍ଣ୍ଣନା କରିବା ଏହି ଗ୍ରନ୍ଥ ଦ୍ୱୟର ପ୍ରଧାନ ଲକ୍ଷ୍ୟ । ଏହା ବ୍ୟତୀତ ଅତ୍ୟନ୍ତ ଲୋକପ୍ରିୟ ଓଡ଼ିଆ ଶୈବ ସାହିତ୍ୟ ହେଉଛି ବଳରାମ ଦାସଙ୍କର 'କଳସା ଚଉତିଶା' ଓଡ଼ିଆ ସାହିତ୍ୟରେ ଏଇଟି ପ୍ରଥମଥର ଅସହାୟ ଓ ନିରୀହ ଭାବେ ଓଡ଼ିଆଭିକୁ ପରିବେଷଣ କରି ହାସ୍ୟରସ ସୃଷ୍ଟି କରାଯାଇଛି । ଏହି ଚଉତିଶାର ବର୍ଣ୍ଣିତ ବିଷୟ ହେଉଛି ଅନୁପମା ସୁନ୍ଦରୀ ହିମବନ୍ତ ନନ୍ଦିନୀ ଉମାଙ୍କ ସହ ନିତାନ୍ତ ବୃଦ୍ଧ ଓ ଦରିଦ୍ର ଶ୍ମଶାନବାସୀ ଶିବଙ୍କର ବିବାହ । ହିମବନ୍ତ ମହର୍ଷି ଏହିଭଳି ଶ୍ରୀହୀନ ବୁଢ଼ା ହାତରେ ନିଜର ଅଲିଅଳି ଆଦରଣୀୟା କନ୍ୟାକୁ ବିବାହ କରାଇବାକୁ ଅନିଚ୍ଛୁକ । ପାର୍ବତୀଙ୍କ ମନରେ ମଧ୍ୟ ପୁଞ୍ଜିଭୂତ ବିଦ୍ରୋହ । ଶେଷରେ ଶିବଙ୍କର ଯଥାର୍ଥ ରୂପ ଦେଖିବା ପରେ ସମସ୍ତ ଦ୍ୱନ୍ଦର ଅବସାନ ଘଟେ । ଏହି ବାସ୍ତବଧର୍ମୀ ଚଉତିଶାଟି ତତ୍‌କାଳରେ ଓଡ଼ିଆ ପରିବାରରେ ବୈବାହିକ ରୀତିନୀତି ଏବଂ ବୃଦ୍ଧବର ଏବଂ ତରୁଣୀ କନ୍ୟା ବିବାହର ଚିତ୍ର ବହନ କରିଛି । ଏହି କବିତାଟିର ବିଶେଷତ୍ୱ ହେଉଛି, ଏହା ଚଉତିଶ ଅକ୍ଷର ନିୟମରେ ଲେଖା ଯାଇଛି ଏବଂ ସରଳ ତଥା ସୁଖପାଠ୍ୟ ହୋଇଛି ।

ସାରଳା ଦାସଙ୍କର ସୃଷ୍ଟି ସମ୍ଭାରରେ ଶୈବ ଚେତନାର ଜୁଆର ପରିଲକ୍ଷିତ ହେଲେ ମଧ୍ୟ ମୁଖ୍ୟତଃ ସେ ଥିଲେ ଜଣେ ସମନ୍ୱୟବାଦୀ ସ୍ରଷ୍ଟା । 'ନିଜେ ସାରଳାଦାସ ନିଜ ବିଷୟରେ ଉଲ୍ଲେଖ କରିଛନ୍ତି ଯେ, ସେ ସାରଳା ଠାକୁରାଣୀଙ୍କର ଦାସ । ଅତଏବ ତାଙ୍କୁ ଶାକ୍ତ କରିବା ଯୁକ୍ତିଯୁକ୍ତ ହେବ । ମାତ୍ର ତାହାଙ୍କ ସାହିତ୍ୟ-

ସାମ୍ରାଜ୍ୟରୁ ତାଙ୍କ ସମନ୍ୱୟବାଦିତାର ପ୍ରମାଣ ଯଥେଷ୍ଟ ମିଳେ । ବୌଦ୍ଧ ତନ୍ତ୍ର ସାଧନାର ବିପର୍ଯ୍ୟୟ ପରେ ସେଇ ତାନ୍ତ୍ରିକ ଅଙ୍ଗକର ରୂପାନ୍ତର ଘଟିବା ଦ୍ୱାରା ହିନ୍ଦୁ ତନ୍ତ୍ର ସାଧନାର ଉତ୍ପତ୍ତି ହେଲା । ସାରଳାଦାସ ଏହି ମାର୍ଗର ସାଧକ ଥିଲେ । ବାସୁଳେଇ, ଜାଗୁଳେଇ, ବିରଜାଇ ଓ ହିଙ୍ଗୁଳାଇ ଆଦି ଓଡ଼ିଶାର ଗ୍ରାମ ଦେବତା ହେବା ପୂର୍ବରୁ ସେମାନେ ବୌଦ୍ଧତନ୍ତ୍ରର ଦେବୀ ଥିଲେ । ସାରଳାଦାସ ସେମାନଙ୍କୁ ସିଦ୍ଧ ନାରୀ ବୋଲି ବର୍ଣ୍ଣନା କରିଛନ୍ତି (ସିଦ୍ଧ ନାରୀ ଅଟେ ସେହି ନୁହେଁ ନାରାୟଣୀ—ମହାଭାରତ, ସ୍ୱର୍ଗାରୋହଣ ପର୍ବ) । ଓଡ଼ିଶାରେ ଏକଦା 'ଗୋମୁଖୀ କେଶବ' ନାମରେ ଏକ ବିଚିତ୍ର ଦେବତା ପୂଜା ପାଉଥିବା କଥା ସାରଳାଦାସ ତାଙ୍କ ମହାଭାରତର ମୂଷଳୀପର୍ବରେ ଉଲ୍ଲେଖ କରିଛନ୍ତି । ଏହି ପ୍ରକାର ଗୋମୁଖୀ କେଶବ ମୂର୍ତ୍ତି ପରିକଳ୍ପନାରେ ସୁରା ଓ ଗୋ-ମାଂସ ଭକ୍ଷଣକାରୀ ନାଥ—ଶୈବଙ୍କର ଅବଧୂତ ପନ୍ଥା ଏବଂ ବୈଷ୍ଣବ ଭକ୍ତଙ୍କର ସାଧନା ମାର୍ଗର ସମନ୍ୱୟ ଦେଖିବାକୁ ମିଳେ । ଏହି ପ୍ରକାର ପୂଜାର ଉଦାହରଣ ସମ୍ବଲପୁର ଜିଲ୍ଲାର 'ନୃସିଂହନାଥ' ନାମକ ପ୍ରସିଦ୍ଧ ତୀର୍ଥରେ ଏବେ ମଧ୍ୟ ଦେଖାଯାଏ । ପ୍ରତିବର୍ଷ ବୈଶାଖ ପୂର୍ଣ୍ଣମୀ (ବୁଦ୍ଧ ପୂର୍ଣ୍ଣିମା ଦିନ ଏଠାରେ ଗୋଟିଏ ବିରାଟ ମେଳା ହୁଏ । ଗୋମୁଖ ଯୁକ୍ତ ବିଷ୍ଣୁ ଏଠାରେ ପ୍ରତିଷ୍ଠିତ ଦେବତା । ସେ ଏକ ଗହ୍ୱର ଗର୍ଭରେ ପ୍ରଚ୍ଛନ୍ନରେ ଥାଇ ପୂଜା ପାଆନ୍ତି । ଏହାଙ୍କର ଅନ୍ୟନାମ ହେଉଛି 'ଶବରୀ ନାରାୟଣ' । ଏଣୁ ସାରଳା ଦାସଙ୍କ ସମୟର ଓଡ଼ିଶାରେ ଧର୍ମ କ୍ଷେତ୍ରରେ ଏକ ସମନ୍ୱୟ ଅଣାଯିବା ପାଇଁ ଚେଷ୍ଟା କରାଯାଉଥିଲା । ଅନ୍ୟ ପକ୍ଷରେ ଓଡ଼ିଶାର ପ୍ରସିଦ୍ଧ ଗଜପତି ରାଜା କପିଳେନ୍ଦ୍ର ଦେବ ବହୁସଂଖ୍ୟ ପ୍ରତିବେଶୀ ରାଜ୍ୟ-ମାନଙ୍କ ଯୁଦ୍ଧରେ ଜୟଲାଭ କରି ଉତ୍କଳର ଶାନ୍ତି ସ୍ଥାପନା ପାଇଁ ଚେଷ୍ଟା କରୁଥିଲେ । ରାଜନୈତିକ କ୍ଷେତ୍ରରେ ଏହିପ୍ରକାର ଅଶାନ୍ତିକୁ ସମାଧାନ କରିବା ପାଇଁ ଗଜପତି ରାଜା କପିଳେନ୍ଦ୍ର ଦେବଙ୍କ ମନରେ ଯେଉଁପ୍ରକାରର ବ୍ୟାକୁଳତା ଦେଖା ଦେଇ ଥିଲା, ଅନୁରୂପ ଭାବେ ଧର୍ମ ରାଜ୍ୟରେ ସ୍ଥିରତା ଆଣିବା ପାଇଁ ଆଗ୍ରହ ଦେଖାଦେଇ ଥିଲା ସାଧାରଣ ଜନ ମାନସରେ । ଓଡ଼ିଆ ଜାତି ଏଇଠି ପ୍ରଥମକରି ନିଜ ମନର ସମସ୍ତ ଆବେଗ, ସମସ୍ତ ଚିନ୍ତନ ଏବଂ ଧର୍ମ ସଂସ୍କୃତି ଓ ସଭ୍ୟତାର ସମସ୍ତ ଉପାଦାନକୁ ସାରଳା ସାହିତ୍ୟରେ ଏକୀଭୂତ ହୋଇଥିବାର ଦେଖି କିଛି କମ୍ ଆନନ୍ଦିତ ହୋଇ ନଥିଲା । ସେଇଥି ପାଇଁ ଓଡ଼ିଶାର ଏକ ଲୋକ କଥା ଗଢ଼ି ଉଠିଲା, "ଯାହାନାହିଁ ଭାରତେ (ମହାଭାରତରେ) ତାହା ନାହିଁ ଭାରତେ ।"

ଅନ୍ୟ ଦିଗରୁ ଦେଖିଲେ ଜଣାପଡ଼େ, ସାରଳାଦାସଙ୍କ ସମୟ ପର୍ଯ୍ୟନ୍ତ ଓଡ଼ିଶାରେ ବ୍ରାହ୍ମଣେତର ଜାତିଙ୍କର ଶାସ୍ତ୍ର ଅଧ୍ୟୟନ ଓ ଅନୁଧ୍ୟାନ କିମ୍ବା ଲିଖନର ଯୋଗ୍ୟତା ନଥିଲା ; ସେ ଶୂଦ୍ର ହୋଇ ପ୍ରଥମେ ସମସ୍ତ ପରମ୍ପରାକୁ ବିରୁଦ୍ଧାଚରଣ କରି ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଥିଲେ । ଏହି ମାଟିର କବି ସାରଳାଦାସ ପ୍ରକୃତରେ ଓଡ଼ିଆ ଜାତିର ତତ୍କାଳୀନ ସୁଖମୟ ପରିସ୍ଥିତିକୁ ବାରମ୍ବାର ପ୍ରତି-ବିମ୍ବିତ କରି ସାହିତ୍ୟ ରଚନା କ୍ଷେତ୍ରରେ ଅତୀବ ସାହସିକ ପଦକ୍ଷେପ ନେଲେ । ପଞ୍ଚଦଶ ଶତାବ୍ଦୀର କବି ସାରଳାଦାସଙ୍କୁ ଅଧ୍ୟୟନ କଲାବେଳେ ମନେହୁଏ, ଆମେ ପ୍ରଥମ କରି ଓଡ଼ିଆ ଜାତିର ପ୍ରାଣକୁ ଚିହ୍ନୁଛୁ, ତା'ର ଆତ୍ମାର ଭାଷାକୁ ବୁଝୁଛୁ ଏବଂ ଧର୍ମଧାରଣା ଓ ଦର୍ଶନରେ ଅନୁପ୍ରାଣିତ ହେଉଛୁ । ଓଡ଼ିଶାରେ କ୍ରମଶଃ ମୁଣ୍ଡ ଟେକିଥିବା ବିଭିନ୍ନ ବିଶ୍ୱାସରେ ସ୍ୱେଚ୍ଛାଚାରୀ ଉଲଙ୍ଗ ବ୍ୟଭିଚାର ସାରଳା ସାହିତ୍ୟରେ ପୁଣିଥରେ ଆପଣା ସ୍ୱୟଂ ମୂର୍ତ୍ତି ଦେଖାଇଛି । ଅସ୍ତ୍ରଗୁରୁ ଦ୍ରୋଣଙ୍କୁ ମାତୃହରଣ ଦୋଷରେ କଳୁଷିତ କଲାବେଳେ ସାରଳାଙ୍କ ଆଖି ଆଗରେ ବଜ୍ରଯାନୀ ସିଦ୍ଧାଚାର୍ଯ୍ୟଙ୍କ ବ୍ୟଭିଚାର ନିଶ୍ଚିତ ରୂପେ ରୂପାୟିତ ହୋଇଛି । ସାରଳାଦାସ ଲେଖିଛନ୍ତି :—

"ମାତା ଶୟନ ସ୍ଥାନକୁ ବିନେ ଦ୍ରୋଣ ଗଲେ
କାମବଶି ନାରୀ, ପୁତ୍ର ସଙ୍ଗରେ ମାତିଲେ ।"
(ମହାଭାରତ-ଦ୍ରୋଣପର୍ବ)

ଏହି ବିଚାରଧାରା ସ୍ୱେଚ୍ଛାଚାରୀ ବୌଦ୍ଧମାନଙ୍କଠାରୁ ଆସିଅଛି, ଯେଉଁମାନେ ନିଜର ଜନନୀ, ଭଗିନୀ ତଥା କନ୍ୟାଙ୍କୁ ସାଧନ ସଙ୍ଗିନୀ ରୂପେ ଭୋଗ କରୁଥିଲେ । ପୁଣି ନାଥ ପରମ୍ପରାର ପଞ୍ଚମନାଥ (ଚୌରଙ୍ଗୀ ନାଥ) ନିଜ ବିମାତାଙ୍କ ସହିତ ନିଷିଦ୍ଧ ପ୍ରଣୟରେ ଆବଦ୍ଧ ଥିବା କଥା ବର୍ଣ୍ଣିତ ଅଛି । ମନେହୁଏ ସାରଳାଦାସ ଦ୍ରୋଣାଚାର୍ଯ୍ୟଙ୍କ ବିମାତା ହରଣ ପ୍ରମୁଖ ଘଟଣାକୁ ସେଇଠାରୁ ଗ୍ରହଣ କରିଛନ୍ତି । ଏଇ ସାରଳାଦାସ ପୁଣି ତତ୍କାଳୀନ ଭାରତରେ, ବିଶେଷକରି ଓଡ଼ିଶାରେ ମାତୃପ୍ରଧାନ ସମାଜ ଥିବାକଥା ବର୍ଣ୍ଣନା କରିଛନ୍ତି । ଏଠି ନାରୀ ଜନ୍ମଦାତ୍ରୀ ଓ ପାଳନ କର୍ତ୍ତ୍ରୀ ରୂପେ ପୂଜ୍ୟା ଓ ସମ୍ମାନିତା । ମନେହୁଏ ପିତୃପ୍ରଧାନ ଆର୍ଯ୍ୟ ଓ ମାତୃପ୍ରଧାନ

ଅନାର୍ଯ୍ୟଙ୍କ ସାମାଜିକ ଚେତନାକୁ ସାରଳାଦାସ ପୁଣିଥରେ ପ୍ରତିବମ୍ବିତ କରିବାକୁ ଚେଷ୍ଟା କରିଛନ୍ତି । ଏହି ସମୟରେ ଜଗନ୍ନାଥ ସଂସ୍କୃତି ଏକ ନୂଆରୂପ ଧାରଣକରି ଓଡ଼ିଆ ଜାତିର ଜୀବନ ତଥା ରାଜନୈତିକ ଚରିତ୍ରକୁ ଅଭିମନ୍ତ୍ରିତ କରିଥିଲା । ଜଗନ୍ନାଥ ଉଭୟ ଆର୍ଯ୍ୟର ଏବଂ ଅନାର୍ଯ୍ୟ ସଂସ୍କୃତିର ସମ୍ମିଶ୍ରିତ ପ୍ରତୀକ ହୋଇ ଥିବାରୁ ଏହି ପ୍ରଚ୍ଛନ୍ନ ବଉଦ୍ଧଧାରା ତାଙ୍କୁ ନୂତନ ମାର୍ଗ ଦର୍ଶାଇ ଥିବ ଏବଂ ସମନ୍ୱୟ-ବାଦୀ ହେବା ପାଇଁ ପ୍ରେରଣା ଦେଇଥିବ । ଜଗନ୍ନାଥ ସଂସ୍କୃତିକୁ ପୁନଃ ଜାଗରିତ କରିବାର ପ୍ରେରଣା ବୈଷ୍ଣବ କବିମାନେ ଆଣି ଦେଇଥିଲେ ଏବଂ ଓଡ଼ିଶାରେ ବୈଷ୍ଣବ ଧର୍ମର ଅଭ୍ୟୁତ୍ଥାନ ପାଇଁ ସେମାନେ ପଥ ପ୍ରସ୍ତୁତ କରି ଦେଇଥିଲେ ।

—:o:—





# ସାହିତ୍ୟକାର ଶାରଳା-ଦାସ ଓ ମାତୃଶକ୍ତିର ଐଶ୍ୱର୍ଯ୍ୟ

ଅଧ୍ୟାପକ—**ନାରାୟଣ ପ୍ରସାଦ ଦାସ**

ଆଦିକବି ସାରଳାଦାସ କଲେଜ, ତିର୍ତ୍ତୋଲ

ପ୍ରତିଷ୍ଠିତ ସତ୍ୟକୁ ପ୍ରାୟୋଗିକ ଓ ପ୍ରୟୋଜନୀୟତା ଦୃଷ୍ଟିକୋଣରୁ ସମର୍ଥନ ବା ବିରୋଧ କରିବା ସଙ୍ଗେ ସଙ୍ଗେ ସାହିତ୍ୟକାର ସ୍ୱକୀୟ ଅଭିଜ୍ଞତାରୁ ସମକାଳୀନ ପରିବେଶକୁ ବିଚାରକୁ ନେଇ ଏକ ସମ୍ଭାବ୍ୟ ସତ୍ୟନିଷ୍ଠ ଆଦର୍ଶ ବା ପ୍ରସ୍ତାବ ଉପରେ ଶୁଭଙ୍କରୀ ନିରପେକ୍ଷ ପ୍ରତ୍ୟୟ ସ୍ଥାପନ କରି ସାହିତ୍ୟ ରଚନା କରିଥାଏ । ସମୟକ୍ରମେ ସେହି ସାହିତ୍ୟକୁ ପୁଞ୍ଜି କରି କଳାମଞ୍ଚରେ ଅନେକ ଦିଗରୁ ତର୍ଜମା ଓ ସମାଲୋଚନା ଆରମ୍ଭ ହୋଇ କେବେ ଶେଷ ହୁଏ କେବେବା ହୁଏନାହିଁ । ସମାଜର ଶୁଭ ବିଧାନ କରିବାରେ ସାହାଯ୍ୟ କରିବାକୁ ସାହିତ୍ୟର ଏକତମ ପ୍ରଧାନ ଆଭିମୁଖ୍ୟ ରୂପେ ଅଙ୍ଗୀକାର କରାଯାଇଛି । ଏହି ପରିପ୍ରେକ୍ଷୀରେ ସାହିତ୍ୟର ଅଙ୍ଗ ଭାବରେ କଳା, ଦର୍ଶନ, ଧର୍ମ, ସୌନ୍ଦର୍ଯ୍ୟ ଚେତନା ଏ ଗଣମାନ ପ୍ରଭୃତି ସ୍ଥାନ ସାବ୍ୟସ୍ତ କରିବା ସର୍ବମାନ୍ୟ ଓ ସ୍ୱୀକାର୍ଯ୍ୟ । ସାହିତ୍ୟ ସ୍ରଷ୍ଟା ଏକ ନିର୍ଦ୍ଦିଷ୍ଟ ଚିନ୍ତାଧାରାକୁ ଆଦର୍ଶ ରୂପେ ଗ୍ରହଣ କରିସାରି ସାହିତ୍ୟ ସର୍ଜନା କଲାବେଳେ ତାର ନିଜସ୍ୱ ଭାବାବେଗ ପ୍ରସୂତ ବିଭିନ୍ନ ରୂପ ଓ ରସର ସୃଷ୍ଟି ଅନୁରୂପ କ୍ଷେତ୍ରରେ ପ୍ରୟୋଗ କରିବାକୁ ଯାଇ ଆଧାରଭୂତ ମୌଳିକ ଧର୍ମଟିକୁ ରକ୍ଷା କରିଥାଏ । ଅନ୍ୟଥା ନିଜର ସୃଷ୍ଟି ପ୍ରତି ଉପଯୁକ୍ତ ସମ୍ମାନ ଓ ନ୍ୟାୟ ପ୍ରଦର୍ଶନ କରିପାରି ନାହିଁ ବୋଲି ବିଚାରିବାକୁ ହେବ ।

ସାରଳା ସାହିତ୍ୟ କଥା ସ୍ୱତନ୍ତ୍ର । ଏହା ପୂର୍ଣ୍ଣ ଭାବରେ ଅନୁବାଦ ସାହିତ୍ୟ ନୁହେଁ ବା ମୌଳିକ ରଚନା ମଧ୍ୟ ନୁହେଁ । ତଦାନୀନ୍ତନ ଚିନ୍ତା ଓ ପରମ୍ପରା ସହିତ ଇଦାନୀନ୍ତନ (ସାରଳା କାଳୀନ) ଭାବବୋଧ ଓ ବାସ୍ତବବୋଧ ଚେତନା ପ୍ରବାହର ଏକ ସକୁଣ୍ଠ ସାରସ୍ୱତ ମିଳନ କରାଇବା ଲାଗି ସଫଳ ପ୍ରୟାସ ଆରମ୍ଭ କରି ଯଶସ୍ୱୀ ହୋଇ ପାରିଛନ୍ତି ଯୁଗପୁରୁଷ ଯୋଗଜନ୍ମା ଆଦିକବି ସାରଳା ଦାସ । ଆର୍ଯ୍ୟ-ମସ୍ତିଷ୍କର କ୍ଲିଷ୍ଟ ଧର୍ମ ଓ ଦର୍ଶନ ବିଚାରକୁ ଓ ଜୀବନ ଧାରାକୁ ସେମାନଙ୍କ ବଂଶଧରମାନଙ୍କ ହୃଦୟ ନିକଟରେ ପହଞ୍ଚାଇ ଦେବାକୁ ଆଦିକବି ଏକ ସେତୁ ରୂପେ କାର୍ଯ୍ୟ କରିଛନ୍ତି ମାତ୍ର । ସ୍ଥଳ ବିଶେଷରେ ନିର୍ଦ୍ଦିଷ୍ଟ ଆଞ୍ଚଳିକ ମୂଲ୍ୟବୋଧକୁ ପରୋକ୍ଷ ଭାବରେ ଯୁକ୍ତି ବ୍ୟଞ୍ଜିତ କରି ଉପସ୍ଥାପିତ କରିବା ଦ୍ୱାରା ଉତ୍କଳୀୟ ଉତ୍କଳୀୟତ୍ୱକୁ ବଜାୟ ରଖିଛନ୍ତି ।

ଅନ୍ୟାନ୍ୟ ପ୍ରଜ୍ଞାସମ୍ପନ୍ନ ପ୍ରତିଭାବାନ୍ କବିମାନଙ୍କ ପରି କବି ସାରଳାଦାସଙ୍କ ଜୀବନରେ ଅଲୌକିକ ଆଦିସତ୍ତାର ପ୍ରଭାବ ପଡିଥିଲା । କବିଙ୍କର ସାହିତ୍ୟ ସୃଷ୍ଟିର ପୃଷ୍ଠଭାଗରେ ଦୈବୀ କରୁଣା ଥିଲା ପ୍ରେରଣାର ଉତ୍ସ । ଏହା କବି ବିଭିନ୍ନ ସ୍ଥାନରେ ଲେଖନୀ ମାଧ୍ୟମରେ ପ୍ରକାଶ କରିଛନ୍ତି । ସେହି ପଂକ୍ତି ସବୁ ଅନୁଧ୍ୟାନ କଲେ ଦୁଇଟି-କଥା ମୁଖ୍ୟତଃ ବୁଝାପଡ଼େ । ଗୋଟିଏ ହେଲା—ଐକାନ୍ତିକ ଭକ୍ତି ଓ ନିଷ୍ଠା ପୂର୍ବକ ମାତୃ ଶକ୍ତିର ଅର୍ଚ୍ଚନା କରାଗଲେ ମାନବ ହୃଦୟରେ ଦୁର୍ଲ୍ଲଭ କବିତ୍ୱ ଶକ୍ତି ଓ ଦିବ୍ୟଜ୍ଞାନ ଉଦୟ ହେବା ସମ୍ଭବ । ଦ୍ୱିତୀୟଟି ହେଲା—ଓଡ଼ିଆ ସାହିତ୍ୟର ବିକାଶ ଓ ପ୍ରସାର ଲାଗି ଉତ୍କଳର ସ୍ୱୟଂ ଜ୍ଞାନାଧୀଶ୍ୱରୀ ଦେବୀ କର୍ତ୍ତୃକ ପ୍ରଶଂସାତ୍ମକ ଅଭିଯାନ । ପଞ୍ଚଦଶ ଶତାବ୍ଦୀରେ ସାରଳାଦାସଙ୍କ ଆବିର୍ଭାବ ଘଟିବା ପୂର୍ବରୁ ଶ୍ରୀକ୍ଷେତ୍ର, ବିରଜା କ୍ଷେତ୍ର, ମଙ୍ଗଳା ପୀଠ ପ୍ରଭୃତି ସ୍ଥାନରେ ଶକ୍ତି ଉପାସନାର ପରମ୍ପରା ପ୍ରଚଳିତ ଥିଲା । ଏଥି ସହିତ ଓଡ଼ିଶାରେ ବୌଦ୍ଧଧର୍ମ ଓ ଜୈନ ଧର୍ମର ପ୍ରଭାବ ପଡିଥିବାରୁ ଝଙ୍କଡ଼ର ସାରଳାଙ୍କୁ ସିଂହବାହିନୀ, ମହିଷ ମର୍ଦ୍ଦିନୀ, ଧ୍ୱଂସକାରିଣୀ ଶକ୍ତି ଚଣ୍ଡୀ ଭାବରେ ପରିକଳ୍ପନା କରାଯାଇଛି । ମାତ୍ର ସାରଳାଦାସ "ଦେବୀ ସାରଦାଙ୍କୁ ଅଷ୍ଟଭୁଜା ମହାସରସ୍ୱତୀ ରୂପେ ଗ୍ରହଣ କରି ଅଘ ଓ ଅନ୍ୟାୟ ଧ୍ୱଂସକାରିଣୀ ଶକ୍ତି ସହିତ ଅଜ୍ଞାନ-

ବିଧ୍ୱଂସିନୀ ଶକ୍ତିର ସମନ୍ୱୟ କରିଛନ୍ତି ।" ସାରଳା ସାହିତ୍ୟରେ ମା'ସାରଳା କପରି ଇଚ୍ଛା, ଜ୍ଞାନ ଓ କ୍ରିୟା ଶକ୍ତିର ସମ୍ମିଶ୍ରଣାତ୍ମକ ଦୈବୀ ଚେତନା ତାହା ପ୍ରତ୍ୟେକ ଚିନ୍ତାଶୀଳ ପାଠକଙ୍କ ଲବ୍ଧ ଜ୍ଞାନ ।

ଲୌକିକ ଜଗତରେ ନାରୀ ନାମ ରୂପର ବୈଭିନ୍ୟ ହେତୁ ପୃଥକ୍ । ନାରୀ ମାତା, କନ୍ୟା, ଭାର୍ଯ୍ୟା ଓ ଭଗ୍ନୀାଦି ଭେଦରେ ବିଭକ୍ତ ହୋଇଥିଲେ ହେଁ "ଦୁର୍ଗା ସପ୍ତଶତୀ"ରେ କେବଳ ମାତୃ ରୂପର ପୂଜା କରାଯାଇଛି । କାରଣ ମାତାହିଁ ଅବ୍ୟକ୍ତକୁ ବ୍ୟକ୍ତ ରୂପ ପ୍ରଦାନ କରେ, ଅପ୍ରକାଶକୁ ପ୍ରକାଶ କରେ । "ଗର୍ଭଧାରଣ ପୋଷାଭ୍ୟାଂ ତସ୍ମାତ ମାତା ଗରୀୟସୀ ।" ସୃଷ୍ଟି ହିଁ ନାରୀର ଲକ୍ଷ୍ୟ, ମାତୃତ୍ୱରେ ନାରୀତ୍ୱର ସାଫଲ୍ୟ । "ମାଙ୍" ଧାତୁରୁ ମା ଶବ୍ଦ ନିଷ୍ପନ୍ନ ହୋଇଛି । ଏହି ଧାତୁମାନ, ନିର୍ଦ୍ଧାରଣ ଓ ପୂଜା ଅର୍ଥରେ ପ୍ରୟୋଗ କରାଯାଏ । ଏହି ତିନୋଟି-ଯାକ ଅର୍ଥ ମା'ପ୍ରତି ପ୍ରଯୁଜ୍ୟ । ପ୍ରତ୍ୟେକ ସୃଷ୍ଟ ଚେତନ ଓ ଅଚେତନ ପଦାର୍ଥର ଆଦି କାରଣ ରୂପେ ମାତୃଶକ୍ତି ବିରାଜିତା । ସେଥିଲାଗି ଏଇ ସ୍ତୁତି :—

"ଯା ଦେବୀ ସର୍ବଭୂତେଷୁ ମାତୃରୂପେଣ ସଂସ୍ଥିତା<br>
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ।"

ମା' ଶବ୍ଦ ବ୍ୟାପ୍ତି ଓ ଅଚ୍ଛନ୍ନ ଧର୍ମ ପ୍ରକାଶ କଲେ ମାୟା (ମାଙ୍+ଯତ୍+ଟାପ୍) ରୂପେ ପ୍ରଯୁକ୍ତ ହୁଏ । ମା'ହିଁ ବିଦ୍ୟା ଓ ମାୟା ଅବିଦ୍ୟା । ମା'କୁ ମା' ବୋଲି ଚିହ୍ନିବା ଓ ମାୟାକୁ ମାୟା ବୋଲି ବୁଝିବା ହିଁ ପ୍ରକୃତ ଜ୍ଞାନ । ମାୟା ମୋହାଚ୍ଛନ୍ନ-ମନୁଷ୍ୟର ମା' ଠାରେ ମାୟାବୁଦ୍ଧି ହୁଏ । । ତେଣୁ "ଯା ଦେବୀ ସର୍ବଭୂତେଷୁ ବିଷ୍ଣୁମାୟେତି ଶବ୍ଦିତା," ବୋଲି ଶାସ୍ତ୍ରରେ ଉଲ୍ଲେଖ କରାଯାଇଛି । ପୁନଶ୍ଚ :—

ବିଷ୍ଣୁ ମାୟାକୁ ସତ ବୁଝି<br>
ପ୍ରାଣୀଏ ଛନ୍ତି ଏଥି ମଜ୍ଜି ।

ଶୁଦ୍ଧ ଚୈତନ୍ୟରୂପା ଦେବୀ ପ୍ରକାଶରେ ମହାଲକ୍ଷ୍ମୀ, ପ୍ରଜ୍ଞାରେ ମହାସରସ୍ୱତୀ ଓ ପ୍ରଳୟରେ ମହାକାଳୀରୂପେ ପ୍ରକଟିତା । ଆଦ୍ୟଶକ୍ତି ହେଉଛନ୍ତି ଈଶ୍ୱର ଜନନୀ । ପ୍ରତ୍ୟେକ ପ୍ରାଣୀର ଚୈତନ୍ୟ ଶକ୍ତି ଓ ପ୍ରତ୍ୟେକ ଜଡ଼ ବସ୍ତୁର ଅନ୍ତର୍ନିହିତ ଉର୍ଜ୍ଜା ଆଦ୍ୟଶକ୍ତିଙ୍କର ଅଂଶ ବିଶେଷ । ଶକ୍ତି ବ୍ୟତିରେକେ ଶକ୍ତିମାନ୍ ନାସ୍ତି ସ୍ୟୁ । ଭଗବତ୍‌ପାଦ ଶଙ୍କରାଚାର୍ଯ୍ୟ "ଆନନ୍ଦ ଲହରୀ" ସ୍ତବରେ ଆଦ୍ୟଶକ୍ତିଙ୍କୁ ସ୍ତୁତି କରି "ଶିବଃ ଶକ୍ତ୍ୟା ଯୁକ୍ତୋ ଯଦି ଭବତି ଶକ୍ତଃ ପ୍ରଭବିତୁଂ" ବୋଲି ଲେଖିଛନ୍ତି । ତନ୍ତ୍ରରେ 'ଇ'କାର ହେଉଛି ଶକ୍ତିର ପ୍ରତୀକ । ଶିବ ଶକ୍ତିମାନ୍ ମାତ୍ର ଇ-କାର ବିଯୁକ୍ତ ହେଲେ ଶବତୁଲ୍ୟ । ସମ୍ପୂର୍ଣ୍ଣ ହେବାର ଅଭିଳାଷ ଯଦି ଅସମ୍ପୂର୍ଣ୍ଣର ଧର୍ମ ବୋଲି ସ୍ୱୀକାର କରାଯାଏ ତେବେ ସେହି ଅଭିଳାଷର ପ୍ରତିବେଦନାରେ ପୁରୁଷ ଓ ନାରୀ ପରସ୍ପର ପ୍ରତି ଆକର୍ଷିତ ଓ ଯୋଗୀରାଜ ଶିବଙ୍କର ଅର୍ଦ୍ଧନାରୀଶ୍ୱର ବିଗ୍ରହ ଧାରଣ । "ତତ୍ତ୍ୱ ପ୍ରକାଶିକା" ଅନୁଯାୟୀ "ଶକ୍ତିଃ ସାମର୍ଥ୍ୟ ଉତ୍ସାହୋ ବା" । କାର୍ଯ୍ୟକାରଣୀ ସାମର୍ଥ୍ୟ ବା ଉତ୍ସାହକୁ ଶକ୍ତି କୁହାଯାଏ । କାନ୍ତି, ବୁଦ୍ଧି, ମେଧା, କ୍ଷମା, ଭକ୍ତି, ପ୍ରୀତି, ଦୟା, ଲଜ୍ଜା, ତୃଷ୍ଣା, ଶ୍ରଦ୍ଧା, ଶ୍ରୀ, କ୍ଷୁଧା ଇତ୍ୟାଦି ଯାହାସବୁ ମାନବୀୟ ପ୍ରକୃତି ବା ପ୍ରବୃତ୍ତି ସମସ୍ତେ ସ୍ତ୍ରୀଲିଙ୍ଗ ବାଚକ ପଦ ଓ ଶକ୍ତିରୂପେ କଳ୍ପିତ । ଏ ସମ୍ବନ୍ଧରେ ଚଣ୍ଡୀ ମହାତ୍ମ୍ୟର ନିମ୍ନୋଦ୍ଧୃତ ପଂକ୍ତି ଉଲ୍ଲେଖଯୋଗ୍ୟ :—

"ଯଚ୍ଚ କିଞ୍ଚିତ୍ କ୍ୱଚିଦ୍ ବସ୍ତୁ
ସଦସଦ୍ ବାଖିଳାତ୍ମିକେ
ତସ୍ୟ ସର୍ବସ୍ୟ ଯା ଶକ୍ତିଃ
ସା ତ୍ୱଂ କିଂସ୍ତୂୟସେ ତଦା ।"

ଏଠାରେ ସତ୍‌କୁ ଚେତନ ଓ ଅସତ୍‌କୁ ଜଡ଼ ପଦାର୍ଥ ରୂପେ ଗ୍ରହଣ କରାଯାଇଛି ।

ବେଦ ବେଦାନ୍ତ ବର୍ଣ୍ଣିତ ନିର୍ଗୁଣ ନିରାକାର ବ୍ରହ୍ମଙ୍କର "ସୋଽକାମୟତ, ଅହଂ ବହୁସ୍ୟାମ୍" ରୂପକ କାରଣରୁ ଏ ଜଗତ ରୂପକ କାର୍ଯ୍ୟର ଉତ୍ପତ୍ତି । ପ୍ରକୃତି ଓ

ପୁରୁଷର ମିଳନ ବା ବ୍ରହ୍ମ ସହିତ ମାୟାର ମିଳନ ହୋଇ ଏ ଜଗତ୍ ଧର୍ମ୍ମବି ହୋଇଛନ୍ତି । ପୁରୁଷ ଠାରୁ ପ୍ରକୃତି ସୃଷ୍ଟି ପ୍ରକ୍ରିୟାରେ ଗୁରୁତର । ବହ୍ନି ସହିତ ଦାହିକା ଶକ୍ତି ଯେପରି ଅଙ୍ଗାଙ୍ଗୀ ଭାବେ ଜଡିତ ଶକ୍ତିମାନ୍ ସହିତ ଶକ୍ତି ସେହିପରି ଅନ୍ୱିତ । ଏଠାରେ ସାରଳା ସାହିତ୍ୟର :—

"ଆଦି ସମ୍ଭୂତ ହୋ ଶୂନ୍ୟ ନିରଞ୍ଜନ
ନିରଞ୍ଜନରୁ ଶକ୍ତି ହୋଇଲ ଉତପନ ।"

ସୃଷ୍ଟି କ୍ରିୟାର ସୂଚନା ଦିଏ । କବି ସାରଳାଦାସ ଆଦିଶକ୍ତିର ପ୍ରତୀକ ରୂପେ ଝଙ୍କଡ଼ ସାରଳାଙ୍କୁ ଉପାସନା କରିଛନ୍ତି ଓ କାବ୍ୟର ବିଭିନ୍ନ ସ୍ଥାନରେ ଏହା ଘୋଷଣା କରିଛନ୍ତି । ତାଙ୍କର ସାରଳା ମହାଭାରତ, ବିଲଙ୍କା ରାମାୟଣ ଓ ଚଣ୍ଡୀ ପୁରାଣ ଶକ୍ତିର ଜୟଗାନରେ ମୁଖରିତ । କବି ନିଜକୁ ମହାମୂର୍ଖ ବୋଲି ଉଲ୍ଲେଖ କରି ଦେବୀଙ୍କ ପ୍ରସାଦରୁ କବିତ୍ୱ ଶକ୍ତିର ଅଧିକାରୀ ହୋଇଛନ୍ତି ବୋଲି ପ୍ରକାଶ କରିଛନ୍ତି । କବି ସାରଳାଙ୍କୁ ମାହେଶ୍ୱରୀ, ବୈଷ୍ଣବୀ, ବାଗ୍‌ଦେବୀ, ସରସ୍ୱତୀ, ଦୁର୍ଗା, ଚଣ୍ଡୀ ଓ ବ୍ରହ୍ମାଣୀ ପ୍ରଭୃତି ନାମରେ ଉଲ୍ଲେଖ କରି ଆରାଧନା କରିଛନ୍ତି । "ସାରଂ (ଜ୍ଞାନଂ) ଦଦାତୀତି ସାରଦା ।" ଶ୍ରେଷ୍ଠ ପଦାର୍ଥହିଁ ଜ୍ଞାନ; କାରଣ "ନହି ଜ୍ଞାନେନ ସଦୃଶଂ ପବିତ୍ର ମିହ ବିଦ୍ୟତେ ।" ଅର୍ଥାତ୍ ଜ୍ଞାନଠାରୁ ପବିତ୍ର ପଦାର୍ଥ ଅନ୍ୟ କିଛି ନାହିଁ । ଏବେ "ସାରଦା" ଦେବୀ ଓଡିଶାର ପୁରପଲ୍ଲୀରେ 'ସାରଳା' ବୋଲି ଖ୍ୟାତା । ତାନ୍ତ୍ରିକ ବୌଦ୍ଧ ଦେବୀ ଝଙ୍କଡ଼େଶ୍ୱରୀ ଓ ସିଂହବାହିନୀ ବୌଦ୍ଧ ବାଗୀଶ୍ୱରୀଙ୍କ ସହିତ ଝଙ୍କଡ଼ର ଦେବୀ ସାରଳାଙ୍କୁ ମଧ୍ୟ ସମାନ କରାଯାଇଥାଏ । ଏହି ପ୍ରସଙ୍ଗରେ ମହାଭାରତ ପ୍ରସ୍ଥାନ ପର୍ବରେ :—

"ବଉଦ ରୂପ ମୁଁ ତାର ପ୍ରସନ୍ନେ ଦେଖଇ
ସେ ଯାହା କହଇ ମୁଁ ତାହା ସେ ଲେଖଇ ।"

ଏଥିରେ ପ୍ରଯୁକ୍ତ 'ବଉଦ' ଶବ୍ଦକୁ 'ବୌଦ୍ଧ' ଅର୍ଥ କରାଯାଇପାରେ । ମାତ୍ର 'ବୁଦ୍ଧ' ଶବ୍ଦରୁ ଅପଭ୍ରଂଶରେ 'ବଉଦ' ହେବା ଅସମୀଚୀନ ନୁହେଁ । ଏଠାରେ

ଶାରଳାଦାସ ଦେବୀଙ୍କୁ ବିଦୁଷୀ ସରସ୍ୱତୀ ରୂପରେ ମଧ୍ୟ ଦେଖିବା ପ୍ରସଙ୍ଗ ବହିର୍ଭୂତ ନୁହେଁ । ସାରଳା ମହାଭାରତର ବିଭିନ୍ନ ପର୍ବରେ କବି ଦେବୀ ସାରଳାଙ୍କୁ କିପରି ତାଙ୍କ ସାହିତ୍ୟ ସାଧନାର ପ୍ରେରଣାଦାୟିନୀ ଭାବେ ପାଇଛନ୍ତି ତାହା ନିମ୍ନୋକ୍ତ ଦୃଷ୍ଟାନ୍ତରୁ ବୁଝାପଡ଼େ :—

"ସାରେଳ ଚଣ୍ଡୀ ନାମରେ ପରମ ବୈଷ୍ଣବୀ
ପ୍ରସନ୍ନ ବରଦାୟିନୀ ପରମ ସାଧ୍ୱୀ ।

× × ×

ତାହାଙ୍କର ପୁତ୍ର ମୁଁ ସାରେଳଦାସ କବି ।"
[ଆଦିପର୍ବ]

× × ×

ମୁହିଁ ଯେ ଅରକ୍ଷିତ ଅଟଇ ଅପଣ୍ଡିତ
ପାଠ ଶାସ୍ତ୍ରେ ମୁଁ ଯେ ନୁହଇଁ ଉପଗତ
ଦୟା କଲେ ମୋତେ ମାରେଳ ଯେ ଚଣ୍ଡୀ
ତେଣୁ କରି ତାର ଯେ ଶ୍ରୀ ଚରଣେ ବନ୍ଦ ।
[ମଧ୍ୟପର୍ବ]

× × ×

ତାହାଙ୍କର ସଦୟେ କିଛି କହିଲି ପୁରାଣ,
ରଚେ ଯାହା କହଇଁ ତାହା ବିବସେ ଲେଖଇଁ
ଏଣୁକରି ସଦୟେ ମୋତେ ହୋଇଲେ ମହାମାୟୀ ।
(ବନପର୍ବ)

ଆସାମର କାମାକ୍ଷା ଦେବୀଙ୍କ ବର୍ଣ୍ଣନା ମଧ୍ୟ ସାରଳା ମହାଭାରତରେ ଦେଖିବାକୁ ମିଳେ । ସଭା ପର୍ବରେ କାମାକ୍ଷୀ ଦେବୀଙ୍କୁ ତନ୍ତ୍ର ଓ ମନ୍ତ୍ର ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ ରୂପେ ବର୍ଣ୍ଣନା କରାଯାଇଛି । କବି ମହାଭାରତର ବନ ପର୍ବରେ ସପ୍ତମାତୃକା ଓ ସ୍ଥାନାନ୍ତରେ ଅଷ୍ଟ ମାତୃକାମାନଙ୍କର ବର୍ଣ୍ଣନା ମଧ୍ୟ ଦେଇଛନ୍ତି ।

ଆଦିକବିଙ୍କର ଅନ୍ୟତମ କୃତି "ବିଲଙ୍କା ରାମାୟଣ" ଶକ୍ତିସମର୍ପିତ । ଶକ୍ତିଙ୍କର ଅଦ୍ଭୁତ ମହିମା ପ୍ରଖ୍ୟାପନ କରିବା ଲାଗି କବି 'ବିଲଙ୍କା ରାମାୟଣ' ରଚନା କରିଛନ୍ତି । ବିଶ୍ୱ ବ୍ରହ୍ମାଣ୍ଡର ସମସ୍ତ ଶକ୍ତିର ପୂର୍ଣ୍ଣତମ ବିଗ୍ରହଧାରିଣୀ ଦେବୀ ସୀତା । ଏହାହିଁ ପ୍ରମାଣିତ କରିବା କବି ଲକ୍ଷ୍ୟ ଓ କାବ୍ୟ ଲକ୍ଷ୍ୟ । ରାବଣର ନିଧନ ପରେ ବିଲଙ୍କାର ଅଧୀଶ୍ୱର ସହସ୍ରଶିର ରାବଣର ଉତ୍ପାତ ଅସହ୍ୟ ହେବାରୁ ଦେବତାଙ୍କ ନିବେଦନରେ ରାମାଭିଷେକ ସମୟରେ ଦେବୀ ସୀତା ରାମଚନ୍ଦ୍ରଙ୍କୁ ଶକ୍ତିର ପରୀକ୍ଷା ଦେଇ ସହସ୍ରଶିର ରାବଣକୁ ବଧ କରିବାକୁ କହିଛନ୍ତି । ରାମଚନ୍ଦ୍ର ନିଜ ବାହୁବଳରେ ବିଶ୍ୱାସ ରଖି ବିଲଙ୍କା ରାବଣ ସହିତ ଯୁଦ୍ଧରେ ପ୍ରବୃତ୍ତ ହୋଇଛନ୍ତି । ମାତ୍ର ପରିଶେଷରେ ଭ୍ରମ ବିପର୍ଯ୍ୟୟ-ଗ୍ରସ୍ତ ହୁଅନ୍ତେ ଦେବୀ ସୀତା ମୋହିନୀ ବେଶରେ ବିଲଙ୍କା ରାବଣ ସମ୍ମୁଖରେ ଉପସ୍ଥିତ ହେବାରୁ ରାବଣ ହୋଇଛି ହୀନବୀର୍ଯ୍ୟ । ଏହି ସୁଯୋଗରେ ରାମଚନ୍ଦ୍ର ବିଲଙ୍କେଶ୍ୱରକୁ ନିହତ କରିଛନ୍ତି । ରାମଚନ୍ଦ୍ର ମଧ୍ୟ ଦେବୀ ସୀତାଙ୍କର ପ୍ରକୃତିରୂପିଣୀ ମହାମାୟା ସ୍ୱରୂପକୁ ସ୍ୱୀକାର କରି ସ୍ତୁତି କରିଛନ୍ତି ।

ଆଦିକବି କୃତ ଚଣ୍ଡୀପୁରାଣ ଚଣ୍ଡୀ ବା ଦୁର୍ଗାଙ୍କର ମାହାତ୍ମ୍ୟ ଓ ଐଶ୍ୱର୍ଯ୍ୟ ପ୍ରକଟନରେ ଶତମୁଖ । 'ଚଡି' (କୋପନେ) ଧାତୁରୁ 'ଚଣ୍ଡ' ଓ ତତ୍ପରେ 'ଚଣ୍ଡୀ' ଶବ୍ଦ ନିଷ୍ପନ୍ନ ହୋଇଛି । ସୁତରାଂ ଚଣ୍ଡୀ ସାରଳାଙ୍କର ଧ୍ୱଂସକାରିଣୀ ମୂର୍ତ୍ତିର ପ୍ରତୀକ । ଅଦ୍ୟାବଧି ଓଡ଼ିଶାର କେତେକ ସ୍ଥାନରେ ସାରଳା ମନ୍ଦିରକୁ ଚଣ୍ଡୀ ମନ୍ଦିର ବୋଲି କୁହାଯାଏ । ଦୁଃ ଉପସର୍ଗ ପୂର୍ବକ ଗମ୍ ଧାତୁରେ ଟାପ୍ ପ୍ରତ୍ୟୟ ଯୋଗ କଲେ 'ଦୁର୍ଗା' ହୁଏ । "ଯେ ଗତ୍ୟର୍ଥାଃ ତେ ପ୍ରାପ୍ତ୍ୟର୍ଥାଃ ।" ସୁତରାଂ ଅତ୍ୟନ୍ତ ଦୁଷ୍କର ସାଧନା ଏବଂ ଐକାନ୍ତିକ ଭକ୍ତି ବଳରେ ଯେଉଁ ଦେବୀଙ୍କୁ ଲାଭ କରିବା ସମ୍ଭବ ହୁଏ ସେ ହେଉଛନ୍ତି ଦୁର୍ଗା । କବି ସାରଳା ଦାସ ସାରଳାଙ୍କ ଠାରେ ଜ୍ଞାନ ଦାୟିନୀ ଶାନ୍ତ

ରୂପ ଓ ଧ୍ୱଂସ କାଳୀନ ଭୟଙ୍କର ରୂପ ଯୁଗପତ୍ ସନ୍ଦର୍ଶନ କରିଛନ୍ତି । ଚଣ୍ଡୀପୁରାଣ ପ୍ରଦ୍ୟୁମ୍ନ ପ୍ରସଙ୍ଗରେ କବି କପଟରେ କନକାବତୀ ନଗ୍ର (ଆଧୁନିକ କନକପୁର) ନିକଟରେ ପ୍ରବାହିତ ହେଉଥିବା ବୃଦ୍ଧା ( ଗୁପ୍ତ ମାଣିକା ? ) ନଦୀର ଚନ୍ଦ୍ରଭାଗା ତୀର୍ଥରେ ସ୍ନାନ କରି ଦେବୀ ଦର୍ଶନ କରିଥିଲେ ତାହା ଉକ୍ତ ପୁରାଣରେ ବର୍ଣ୍ଣନା କରାଯାଇଛି ।

"ଆଜ୍ଞା ହୋଇଲା ତୋତେ ଶୁଣରେ ବାଳୁତ
ମୋହର ମହିମା କର ସଂସାରେ ବିଖ୍ୟାତ ।"

× × ×

ଯେ ଦେବୀର ଅବତାରେ ପୁରାଣର ବାଣୀ
ଜନ ନିସ୍ତାରଣ ଅର୍ଥେ ବଖାଣିଲ ପୁଣି ।

× × ×

ଅଭୟେ ମାତଙ୍ଗୀ ଶ୍ରୀ ସାରଳା ଚଣ୍ଡୀ ଦେବୀ
ଶୁଦ୍ରମୁନି ସାରଳା ଦାସ ଜନ୍ମେ ଜନ୍ମେ ସେବି ।

ଦେବୀ ଭାଗବତ ଓ ବିଷ୍ଣୁ ପୁରାଣ ଅବଲମ୍ବନରେ ଚଣ୍ଡୀପୁରାଣ ରଚନା କରାଯାଇଥିଲେ ହେଁ ଦେବୀଙ୍କର ଅବାରିତ କରୁଣାବାରିରେ ଅଭିଷିକ୍ତ ଆଦିକବି ସ୍ୱୀୟ ମୌଳିକତା ପ୍ରଦର୍ଶନ ପୂର୍ବକ ଗ୍ରନ୍ଥଟିକୁ ପୁଷ୍ଟ କରିଛନ୍ତି । ସୃଷ୍ଟିକୁ ଦୁର୍ଗତିରେ ଉଦ୍ଧାର କରିଥିବାରୁ ଚଣ୍ଡୀଙ୍କ ନାମ ଦୁର୍ଗା ବୋଲି କବି ଉଲ୍ଲେଖ କରିଛନ୍ତି । ମହିଷମର୍ଦ୍ଦିନୀ ମୂର୍ତ୍ତିର ଦେପାର୍ଶ୍ୱସ୍ଥିତ ମହିଷାସୁରର ଦେହ ନରଦେହ ଓ ମୁଣ୍ଡ ମହିଷ ମୁଣ୍ଡ ହୋଇଥିବାରୁ କାବ୍ୟ ବର୍ଣ୍ଣିତ ମହିଷାସୁରର ଆକୃତ ତଦନୁରୂପ । ଏହି ପୁରାଣର ବର୍ଣ୍ଣନାନୁଯାୟୀ ଚଣ୍ଡୀ ରାକ୍ଷସମାନଙ୍କୁ ନିଧନ କରିବା ଲାଗି ଯେଉଁ ଯେଉଁ ଦେବାଦେବୀମାନଙ୍କୁ ନିଜ ଅଙ୍ଗରୁ ଉତ୍ପନ୍ନ କରିଛନ୍ତି, ସେହି ସେହି ଦେବାଦେବୀ ମାନେ ଓଡ଼ିଶାର ଭିନ୍ନ ଭିନ୍ନ ସ୍ଥାନରେ ପୂଜା ପାଉଥିବାର ଦେଖାଯାଏ । କବି 'ଶୁଣୀ' 'ମୁଖୀ' ଇତ୍ୟାଦି ପ୍ରତ୍ୟୟ ଯୋଗ କରି ନୂଆ ଦେବୀମାନଙ୍କୁ ସୃଷ୍ଟି କରି

କାଳ୍ପନିକ ରୂପ ଓ ଶକ୍ତିରେ ମଣ୍ଡିତ କରିଛନ୍ତି । ଉଦାହରଣ ସ୍ୱରୂପ—ରମ୍ଭାଶୁଣ୍ଡୀ, କାପୋତ୍ରାଶୁଣି, କାକମୁଖୀ, ବିଡାଳମୁଖୀ ପ୍ରଭୃତି ଉତ୍କଳୀୟ ସମାଜରେ ଲୋକ ପ୍ରିୟତା ଅର୍ଜନ କରିବା ହୁଏତ ଏହାର କାରଣ ହୋଇପାରେ ।

ଚଣ୍ଡୀ ପୁରାଣରେ ମହିଷାସୁରର ମୃତ୍ୟୁ ପରେ ଚଣ୍ଡୀଙ୍କୁ ସନ୍ତୁଷ୍ଟ କରିବା ଲାଗି ଦେବତାମାନଙ୍କର ଯେଉଁ ପ୍ରଚେଷ୍ଟା ପ୍ରଦର୍ଶିତ ହୋଇଛି ତାହା ବେଶ୍ ତାତ୍ତ୍ୱିକ ଓ ଚିନ୍ତା ଉଦ୍ରେକକାରୀ ହୋଇ ପାରିଛି । ଶିବଙ୍କର ଶକ୍ତି ନିକଟରେ ଆତ୍ମସମର୍ପଣ, ମହାକାଳୀଙ୍କର ମହାକାଳ ଉପରେ ପ୍ରଭାବ ବିସ୍ତାର ସମର୍ଥ ବୋଧକ । କାଳ ବଳବାନ ଓ କାଳର ଅଧିଷ୍ଠାତ୍ରୀ ଦେବୀ କାଳୀ । କାଳୀଙ୍କୁ ସନ୍ତୁଷ୍ଟ କରି ଶିବ କାଳଜୟୀ ବା ମୃତ୍ୟୁଞ୍ଜୟ । ଚଣ୍ଡୀ ପୁରାଣୋକ୍ତ ଚଣ୍ଡୀ ଏକ ସର୍ବଭାରତୀୟ ଦେବୀ ହେଲେହେଁ ସାରଳାଦାସ ତାଙ୍କୁ ଇଷ୍ଟ ଦେବୀ ଓ ଝଙ୍କଡର ଦେବୀ ରୂପେ ଦେଖିଛନ୍ତି ।

ଶାକ୍ତ ସାରଳାଦାସ ନିଜର କୃତି ମାନଙ୍କରେ ବିରଜା ସପ୍ତମାତୃକା, ମଙ୍ଗଳା, ରାମଚଣ୍ଡୀ ଓ ଯୋଗିନୀ ପ୍ରଭୃତିଙ୍କର ନାମୋଲ୍ଲେଖ କରିଥିବାରୁ ସେ ଅଧିକାଂଶ ଶକ୍ତି ପୀଠ ଭ୍ରମଣ କରିଥିବାର ଅନୁମାନ କରାଯାଏ । ଭାରତୀୟ ଦର୍ଶନର "ଶକ୍ତି ଶକ୍ତି ମତୋର ଭେଦଃ" ସିଦ୍ଧାନ୍ତ ସାରଳାଦାସ ମଧ୍ୟ ଚଣ୍ଡୀପୁରାଣ ଓ ବିଲଙ୍କା ରାମାୟଣରେ ଗ୍ରହଣ କରିଛନ୍ତି । ସେଥିପାଇଁ ତାଙ୍କ ମତରେ ଯୁଗେ ଯୁଗେ ଅନ୍ୟାୟ ଓ ଧର୍ମର ଗ୍ଲାନିରୁ ଜଗତକୁ ଉଦ୍ଧାର କରିବା ଲାଗି ଦୈବୀଶକ୍ତି ଅବତାର ଗ୍ରହଣ କରନ୍ତି । ଲାକ୍ଷଣିକ ଅର୍ଥରେ ଏହି ଦୈବୀଶକ୍ତି ଅନ୍ୟ କିଛି ନୁହେଁ, "ଇଂ ଚେତନାଽସି ପୁରୁଷେ ।" ଏହି ଚେତନାକୁ ସନ୍ମାର୍ଗଗାମୀ କରିବାକୁ, ନୈସର୍ଗିକ ଭାବରାଜ୍ୟରେ ପ୍ରତିଷ୍ଠିତ କରିବାକୁ ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତିଙ୍କୁ ଆହ୍ୱାନ କରିଛନ୍ତି ଆଦିକବି ସାରଳାଦାସ । ଏହା ଯେଉଁଦିନ ସମ୍ଭବ ହେବ ସେଦିନ ସମାଜରେ କୌଣସି ମହିଷାସୁର, ସହସ୍ରଶିର ବା ଦୁଃଶାସନ ଉତ୍ପାତ କରିବାକୁ ସାହସ କରିବ ନାହିଁ । ସମସ୍ତେ ଶାନ୍ତିର ଚନ୍ଦ୍ରାତପତଳେ ଶକ୍ତିର ଆବାହନ କରିବେ, ଦ୍ୱନ୍ଦ୍ୱକୁ ଅପସାରଣ କରି ଏକତାମନ୍ତ୍ରର ପୁରଶ୍ଚରଣ କରିବେ ।

—୪୦ଃ—

# ଚଣ୍ଡମାତଙ୍ଗୀର ଇତିବୃତ୍ତି

ଅଧ୍ୟାପକ-**କୈଳାସ ଚନ୍ଦ୍ର ଦାଶ**
ଆଦିକବି ସାରଳା ଦାସ ମହାବିଦ୍ୟାଳୟ, ଝଙ୍କଡ଼

**ଆ**ଦିକବି ସାରଳାଦାସ ଉତ୍କଳୀୟ ସାମାଜିକ, ସାଂସ୍କୃତିକ ଓ ଧାର୍ମିକ ଚେତନାର ଜଣେ ସଚେତନଶୀଳ କରିତ୍କର୍ମା । ଉତ୍କଳୀୟ ଐତିହାସିକ ଓ ଭୌଗଳିକ ବର୍ଣ୍ଣନାରେ ତାଙ୍କ ସାହିତ୍ୟ ସମୃଦ୍ଧ । ଜଣେ ସାର୍ଥକ ଜାତୀୟ କବି ଭାବରେ ଉତ୍କଳୀୟ ଜନଜୀବନରେ ସେ ଗଭୀର ରେଖାପାତ କରିଥିଲେ । ଜଣେ ଖାଣ୍ଟି ଓଡ଼ିଆ ମାଟିର ଦାୟାଦ ଭାବରେ ଓଡିଶାର ଗିରି, ବନ, ନଦନଦୀ ଦେବ ଦେବୀ ସମାଜ ଓ ସଂସ୍କୃତି ବହୁ ବର୍ଣ୍ଣନା ବୈଚିତ୍ର୍ୟ ମଧ୍ୟ ଦେଇ ପ୍ରତିଭାତ । "ସେହିଁ କେବଳ କବି ଯେ କି, ଦେଖିପାରେ" ସଂସ୍କୃତରେ "କବିତ୍ୱଂ ଦୁର୍ଲଭଂ ଲୋକେ" ଆଦିକବିଙ୍କର ଅଲୌକିକ ସୃଷ୍ଟି କୌଶଳରେ ପାଠକ ମନ୍ତ୍ରମୁଗ୍‌ଧ । ବର୍ଣ୍ଣନା ପାଟବରେ ବାସ୍ତବତା ତଥା ଘଟଣା ପ୍ରବାହର କ୍ରମିକତା ଦୃଷ୍ଟିରୁ ସେ ଜଣେ କଥକର ଦିବ୍ୟ ଦୃଷ୍ଟିର ଅଧିକାରୀ । ଉତ୍କଳୀୟ କାହାଣୀ ଓ କିମ୍ବଦନ୍ତୀକୁ ଲିଖିତ ରୂପଦାନ କରି ସେମାନଙ୍କର ଭୌଗଳିକ ଆବସ୍ଥିତିକୁ ବହୁଭାବରେ ଯୌକ୍ତିକ ପ୍ରତିଷ୍ଠାପ୍ରଦାନ କରି ମହାକବି ସାରଳା ଅମର ହୋଇ ରହିଛନ୍ତି ।

ସଂସ୍କୃତ ଓ ପ୍ରାଦେଶିକ ପ୍ରାକୃତ ଭାଷାରେ ପାଣ୍ଡିତ୍ୟ ଲାଭ କରିଥିବା ସାରଳା ଦାସ ଉତ୍କଳ ସମ୍ରାଟ ପ୍ରତାପି କପିଳେନ୍ଦ୍ର ଦେବଙ୍କ ସମସାମୟିକ ଥିଲେ । କପିଳେନ୍ଦ୍ର ଦେବଙ୍କ ଦିଗ୍‌ବିଜୟ ବହୁଭାବରେ କଳିଙ୍ଗ ସାମ୍ରାଜ୍ୟକୁ ସମୃଦ୍ଧ କରିଥିଲା । କବି ଉତ୍କଳୀୟ କଥିତ ଭାଷାକୁ ପ୍ରତିଷ୍ଠିତ କରି ତାହାକୁ

ସାହିତ୍ୟକ ମର୍ଯ୍ୟାଦା ପ୍ରଦାନ କରି ସଂସ୍କୃତ ଅନୁରୂପ ବିଶାଳ ସାହିତ୍ୟ ସୌଧ ପ୍ରତିଷ୍ଠା ନିମନ୍ତେ ସମର୍ଥ ହୋଇ ପାରିଥିଲେ । ସଂସ୍କୃତ ଓ ପ୍ରାକୃତ ଭାଷାମାନଙ୍କରେ ଅସାଧାରଣ ବ୍ୟୁତ୍ପତ୍ତିର ଅଧିକାରୀ କବି ତାଙ୍କ ସୃଷ୍ଟିମାନଙ୍କରେ ଶବ୍ଦର ମହାସାଗର ସୃଷ୍ଟିକରି ଯାଇଛନ୍ତି କହିବା ବାହୁଲ୍ୟ ଯେ ସେ ଓଡ଼ିଆଭାଷା ଓ ସାହିତ୍ୟକୁ ରାଜାସନ ପ୍ରତିଷ୍ଠା ଦେଇ ପାରିଛନ୍ତି ।

ବିଶ୍ୱ ସଭ୍ୟତା ନଦୀମାତୃକ । ଆର୍ଯ୍ୟ ସଭ୍ୟତା ସିନ୍ଧୁ ଓ ଗଙ୍ଗା ନଦୀର ଅବବାହିକାରୁ ଉଦ୍ଭବ । ଭାରତୀୟ ସଂସ୍କୃତିରେ ନଦୀର ଭୂମିକା ପ୍ରଥମ ବେଦର ପ୍ରଥମ ପ୍ରଣବ ଓଁ କାର ଏହି ନଦୀ କୂଳରେ ମୂର୍ଚ୍ଛନା ସୃଷ୍ଟି କରିଥିଲି ବହୁ ମୁନି ଆଶ୍ରମ ଓ ଦେବାଳୟ ଏହି ନଦୀ ତଟରେ ମଥାଟେକି ଉଠିଥିଲି । ଆର୍ଯ୍ୟ ସଭ୍ୟତା, ସଂସ୍କୃତି, ସାହିତ୍ୟ କୃଷ୍ଟି ତଥା ଧାର୍ମିକ ଚେତନାରେ ନଦୀର ଭୂମିକା ବୈଦିକ, ସଂସ୍କୃତ, ବେଦ, ଉପ-ନିଷଦ, କାବ୍ୟ କବିତାର ବିଭିନ୍ନ ପର୍ଯ୍ୟାୟରେ ବିଭିନ୍ନ ନଦୀର ବର୍ଣ୍ଣନା ଯଥା-ଗଙ୍ଗା, ଯମୁନା, ନର୍ମଦା, ସିନ୍ଧୁ, କାବେରୀ, ଗୋଦାବରୀ, ସରସ୍ୱତୀ ପ୍ରଭୃତି ନଦୀ ପରିଦୃଷ୍ଟ ହୁଏ । ବେଦ ଯୁଗରୁ କାଳିଦାସଙ୍କ ପର୍ଯ୍ୟନ୍ତ ଏହି ନଦୀମାନେ ମୁଖ୍ୟତଃ ସାହିତ୍ୟରେ ଏକ ସ୍ୱତନ୍ତ୍ର ଭୂମିକା ଗ୍ରହଣ କରିଛନ୍ତି । ବାକ୍ୟ ଲକ୍ଷଣରେ ମଧ୍ୟ ଏହି ନଦୀ କିମ୍ବା ସମୁଦ୍ର ବର୍ଣ୍ଣନାକୁ ଗ୍ରହଣ କରାଯାଇଛି । ମହାକବି ସାରଳାମଧ୍ୟ ସଂସ୍କୃତ ଅନୁରୂପ ନଦନଦୀର ବର୍ଣ୍ଣନା ତାଙ୍କ ସାହିତ୍ୟରେ ବହୁଳ ଭାବରେ ପ୍ରକାଶ କରିଛନ୍ତି ଓ ଏହାର ତୀର ଦେଶରେ ବହୁ ରାଜଧାନୀ ଧର୍ମପୀଠ, ସାଂସ୍କୃତିକପୀଠ ଓ ସିଦ୍ଧପୀଠମାନ ଗଢି ଉଠିଥିଲି ବୋଲି ସୂଚନା ଦେଇଛନ୍ତି । ପରିବ୍ରାଜକ ହୁଏନସାଙ୍କ ବିବରଣୀରୁ ପ୍ରତିପନ୍ନହୁଏ ଯେ ତାଙ୍କର ଆଗମନ କାଳରେ ଉତ୍କଳୀୟ ନୌବାଣିଜ୍ୟ ସୁଦୂର ପ୍ରସାରିଥିଲି ଓ ଜଳପଥ ଦେଇ ସେ ଭାରତ ଆଗମନ କରିଥିଲେ । ବେଦଯୁଗରେ ନଦୀମାନଙ୍କୁ ଦେବୀଜ୍ଞାନରେ ଆରାଧନା କରାଯାଇଥିଲି ଏହା ଜ୍ଞାନର ପ୍ରତୀକଭାବରେ ଗ୍ରହଣୀୟ ଥିଲି ସରସ୍ୱତୀ ନଦୀର ତୀରରେ ପୁଷ୍କର ଓ ପ୍ରଭାତପରି ତୀର୍ଥମଧ୍ୟ

ମୁଣ୍ଡଚଟକ ଉଠିଥିଲା । ଗଙ୍ଗାନଦୀ ତୀରରେ ହସ୍ତିନା, ବାରୁଣାବନ୍ତ, ଜଇନ୍ତା କଟକର ସୃଷ୍ଟି ମଧ୍ୟ ହୋଇଥିଲା ସାରଳା ମଧ୍ୟ ଏହି ନଦୀକୁ ଦେବୀ ଭାବରେ ଗ୍ରହଣ କରିଛନ୍ତି । କୃପାଜଳ ନନ୍ଦିନୀ ଯେ ନର୍ମଦା ସରସ୍ୱତୀ/ପଶ୍ଚିମ କୋଶଳ ଗୋ ହୋଇଲେ ଉତପତ୍ତି/ସ୍ୱର୍ଗାରୋହଣ ପର୍ବ' ପୃ.୯୫)

ବିଭିନ୍ନ ଉତ୍କଳୀୟ ନଦନଦୀର ବର୍ଣ୍ଣନା ସାରଳାଙ୍କର ମହାକାବ୍ୟରେ ପରିଦୃଷ୍ଟ ହୁଏ । ଚିତ୍ରୋତ୍ପଳା ନଦୀ କୂଳରେ ସମଲାଇ, ନୀଳମାଧବ, ଭଟାରିକା ଚର୍ଚ୍ଚିକା ଓ ଶାରଳା ଆଦି ବହୁ ଦେବାଦେବୀ ପୀଠ ଓ ବହୁ ସିଦ୍ଧପୀଠ ଅବସ୍ଥିତ । ସେହିପରି ଯାଜନଗରୀଥିଲା ଉଦାନନ୍ଦନ ଏହି ଶକ୍ତିପୀଠ । ଶକ୍ତିପୀଠରେ ଦେବୀ ବିରଜା ଓ ବୈତରଣୀ ନଦୀର ମହାତ୍ମ୍ୟ ସାରଳା ବର୍ଣ୍ଣନା କରିଛନ୍ତି । ଚନ୍ଦ୍ରଭାଗା ନଦୀ ଓ ପୀଠର ଉତ୍ପତ୍ତି ରହସ୍ୟ ମଧ୍ୟ ଉଦ୍‌ଘାଟିତ ହୋଇଛି । କପୋଳ କଳ୍ପିତ ଭାବରେ ବହୁନଦୀର ସୃଷ୍ଟି ରହସ୍ୟ ବର୍ଣ୍ଣିତ ଓ ତୀରସ୍ଥ ଦେବ ଦେବୀଙ୍କର ବାସ୍ତବତାକୁ କଳ୍ପନା ଶକ୍ତି ବଳରେ ଯୋଡ଼ିଦେଇ ସୁନ୍ଦର ସୁନ୍ଦର କାହାଣୀ ସୃଷ୍ଟି କରିବାରେ କବି ସିଦ୍ଧହସ୍ତ । ସାଗର ସିଂହ ଦାନବକୁ ବଧକରି ସାରିଲା ପରେ ଗୋ ମୁଖ କେଶବଙ୍କର ବର୍ଣ୍ଣନା ପର୍ଯ୍ୟାୟରେ କବି କୁହନ୍ତି:—

ଗୋ ମୁଖ କେଶବରେ ଲିଙ୍ଗ ଯେ ପଶ୍ଚିମ ମୂରତି
ତହୁଁ ସେ ପ୍ରାଚୀନାମେ ହେଲା ନଦୀସ୍ୱେ ଉତପତ୍ତି ।

ଅଶି ସହସ୍ର ଗର୍ଭକ ଆଣିଲେ ତାହାଖୋଳ/ କେଶବ ଲିଙ୍ଗ ଗୁଡ଼ାଇଲା ଯେ-ବାଜଣ କୋଦାଳ/ଆଠଖଣ୍ଡହୋଇ ଛିଡ଼ ଗଲା ଯେ ଲିଙ୍ଗମୂର୍ତ୍ତି ଗ୍ରାମେଶ୍ୱର ଅଷ୍ଟସମ୍ଭୁ ହୋଇଲେ ସେ ପ୍ରାଚୀ ନଦୀ କୂଳରେ ଗୋ କର୍ଣ୍ଣେଶ୍ୱର । କପାଳେଶ୍ୱର ଶୋଭନେଶ୍ୱର ଗ୍ରାମେଶ୍ୱର/ହର ଶବରେଶ୍ୱର ସୋମେଶ୍ୱର ନାଟକେଶ୍ୱର ଶୁକ୍ଳେଶ୍ୱର/ ॥ ଭୋଗଜନ୍ ମକର ସଂକ୍ରାନ୍ତିରେ ଯେ-ପ୍ରାଚୀରେ ସ୍ନାହାନ/ଉପବାସେ ମଉନେ ଅଷ୍ଟସମ୍ଭୁ କରନ୍ତି ଦରଶନ/ନବକୋଟି ତୀର୍ଥ

ସଙ୍ଗେ ଘେନିଣ ପୁଷ୍କର/ ରାତ୍ର ଦିବସେ ଆସ୍ନେ ସ୍ନେ ପ୍ରାଚୀ ନଦୀତୀର
(ପୃ-୧୦୭ ମୂଷଳୀ ପର୍ବ.)

ଚିତ୍ରୋତ୍ପଳା (ମହାନଦୀ)ର ଏକ ଶାଖାନଦୀ ଭାବରେ ପ୍ରାଚୀ ନଦୀ ନିଆଳି ମାଧବ ଦେଉଳ ପୂର୍ବ ଗାମିନୀ ହୋଇ ସମୁଦ୍ରରେ ମିଶିଯାଇଛି । ଏହି ନଦୀର କୂଳେ କୂଳେ ବହୁ ଆଶ୍ରମ ଦେବାଳୟ ଏବେବି ଅତୀତର ମୂକସାକ୍ଷୀରୂପେ ବିଦ୍ୟମାନ । ଏହି ଚିତ୍ରୋତ୍ପଳା (ମହାନଦୀ)ର ଅନ୍ୟ ଏକ ଶାଖାନଦୀ ବୃଦ୍ଧାପ୍ରାଚୀ ବୃଦ୍ଧାନଦୀନାମ ଧାରଣ କରି ପୂର୍ବଗାମିନୀ ହୋଇଥିଲା । ଏହା ଜୟପୁର ନିକଟ **ଧଳଡଙ୍ଗଗଡ଼ ଜଙ୍ଗଲ** ନିକଟରୁ ବାହାରି ଥିବାର ଜଣାଗଲେ ମଧ୍ୟ ପୂର୍ବର ସମୟ କ୍ରମଶଃ ପୋତିହୋଇ ପଡିଥିଲାପରି ଦେଖାଯାଏ । ଏହିନଦୀ କୂଳରେ ସାରଳାପୀଠ ତଥା କଣସ୍ଥାବତୀ ପାଠଣା (କନକପୁର) ଅବସ୍ଥିତ ବୋଲି କବିଙ୍କ ବର୍ଣ୍ଣନାରୁ ଜଣାଯାଏ ।

ଯେତେସେ ଜମ୍ବୁଦ୍ୱୀପ ଭରତଖଣ୍ଡମଧ୍ୟେ ଉତ୍କଳରାଷ୍ଟ୍ରେ/ଭୁବନଯାଯନଗ୍ରାର ପୂର୍ବଦିଗ ମଣ୍ଡଳଧି ନିକଟେ/ ଶ୍ୱେତ ବରେହାମାଳସୁନ୍ଦର ଗିରିମଧ୍ୟସ୍ଥାନେ/ ମହାକାବ୍ୟ ଆଖ୍ୟାନେ ଚନ୍ଦ୍ରଭାଗା ଅଳକତୀର୍ଥ ଇଶାନେ/ ପୁରୁରବା ସଞ୍ଚିତ ସେ ଝଂକେରପୁର ଯାହାବୋଲି/ ଶ୍ରୀଗିରିଜାର ଆଜ୍ଞାଯେ ମୁଁହିଁ ତହିଁ ଜନମିଲି/ ଚିତ୍ରଉତ୍ପଳଭାଗୀ ଈଶାନ ମୂରତି/ ବୃଦ୍ଧଧ୍ୱଜ ମୁନି ତହିଁ ତପେଣ ବସିଛନ୍ତି/ ତାହାଙ୍କର ଜଟାଭେଦି ବହଇ ନଦୀ ବୃଦ୍ଧାମାତା/ କଣସ୍ଥାବତୀ ପାଠଣାଯେ ପଶୁରାମଙ୍କର ସଞ୍ଚିତା/ ଅଭୟେକାନ୍ତାନ ସେ ତ୍ରିଭୁବନମଣ୍ଡୀ/ ଶୁଦ୍ରମୁନି ସାରଳାଦାସଙ୍କୁ ପ୍ରସନ୍ନ ସାରଳାଚଣ୍ଡୀ [ବିରାଟ ପର୍ବ ପୃ-୭୧୦] ଏଥିରୁ ଅନୁମିତ ହୁଏ ଯେ କାଠଯୋଡ଼ି ନଦୀରୁ ବୃଦ୍ଧାନଦୀର ସୃଷ୍ଟି ହୋଇ ଏହା ଉତ୍ତର ଦିଗକୁ ଗତିକରି ଜୟପୁର (ଝଙ୍କୋଳ) ନାଲିବର ନିକଟରୁ ପୂର୍ବଗାମିନୀ ହୋଇ ସମୁଦ୍ରରେ ପଡ଼ିଥିଲା । ଏହାର ତୀର ଦେବୀମନ୍ଦିର ଓ ଆଶ୍ରମଆଦି ବିଦ୍ୟମାନ ଥିଲା । ୧୮୬୬ ଖ୍ରୀଷ୍ଟାବ୍ଦ ନଅଙ୍କ ଦୁର୍ଭିକ୍ଷ ବେଳେ ଏହାର ଧାର ଅବରୋଧକରି କେନାଲ ଖୋଳା-

ଯିବାରୁ ଏହାର ଶଯ୍ୟା ଶୁଷ୍କ ହୋଇଥିଲା ଓ ଏହା ପାର୍ଶ୍ୱରେ ଶ୍ରୀ ଶାରଳାଚଣ୍ଡୀଙ୍କ ମନ୍ଦିର ଅବସ୍ଥିତଥିଲା ।

ଆଲୋଚନା ପ୍ରସଙ୍ଗରେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ ବର୍ତ୍ତମାନର ବୃଦ୍ଧାନଦୀ ସାତଭାଇଗ୍ରାମ ନିକଟରେ ପ୍ରବାହିତ ହେଉଥିଲା । ଶାରଳାଙ୍କ ପ୍ରାଚୀନ ମନ୍ଦିର ଏହି ସାତଭାଇଗ୍ରାମରେ ଅବସ୍ଥିତଥିଲା । ପୁରାତନ ବୃଦ୍ଧାନଦୀର ଏକ ଶାଖାନଦୀ ଥିଲାପରି ପ୍ରତୀୟମାନ ହୁଏ । କାଳକ୍ରମେ ଏହାର ପ୍ରଧାନ ଧାରଟି ପୋତି ହୋଇ ପଡ଼ିବାରୁ ଏହି ବୃଦ୍ଧାନଦୀ କୂଳରେ ଆଦିକବିଙ୍କର ସମାଧିପୀଠ ଓ ପ୍ରସିଦ୍ଧ ଝଲ୍ଲ୍ୟ ଶାରଳା ମନ୍ଦିର ଲୋକଲୋଚନକୁ ନ ଆସିଥିଲେ ମଧ୍ୟ ବିଦ୍ୟମାନ । ଏବେବି ବୃଦ୍ଧାନଦୀର ଧାର କ୍ରମଶଃ ସଂକୁଚିତ ହୋଇ ଘୃଷିଜମିରେ ପରିଣତ ହେବାକୁ ବସିଲାଣି । ଏପରି ସମୟ ଆସିବ ବୃଦ୍ଧାନଦୀ ଇତିହାସରେ ପରିଣତ ଯେ ନ ହେବ ଏକଥା କିଏ କହିବ ?





---

ଜୀବ ମାନେ ହିଁ ମାତୃ ଅଙ୍କସ୍ଥିତ ନଗ୍ନ ଶିଶୁ । ଏକଥା ବିଚାର ସାହାଯ୍ୟରେ ଯୁକ୍ତି ସାହାଯ୍ୟରେ ବୁଝାଯାଏ ନାହିଁ । ସ୍ମରଣ ମାନେ ହିଁ ପ୍ରାଣରେ ମାତୃ ସ୍ୱରୂପ ଉଦ୍ଭାସିତ ହୁଏ । —**ମାତୃବାଣୀ**—

# ଯାତ୍ରା ସୂଚନା ଓ ଦର୍ଶନୀୟ ସ୍ଥାନ

## ଝଙ୍କଡ ସାରଳା ମନ୍ଦିରକୁ ଯାତ୍ରା ସୂଚନା:—

୧) ରାଜଧାନୀ ଭୁବନେଶ୍ୱର ସରକାରୀ ବସ୍‌ଷ୍ଟାଣ୍ଡରୁ ଅପରାହ୍ଣ ୪ଟାବେଳେ ଶାରଳାପୀଠ (କନକପୁର) ବସରେ ଆସି ମନ୍ଦିର ସମ୍ମୁଖରେ ପହଞ୍ଚିବେ ।

୨) କଟକରୁ O M P ଛକ ବା ବାଦାମବାଡିରୁ ପ୍ରତି ଅଧଘଣ୍ଟାଏ ୩୦.ମି. ଅନ୍ତରରେ ପାରାଦୀପ/ଏରସମା/କୋଇଲର ବସ୍‌ରେ ଆସି ଶାରଳାରୋଡ ବା ତେନ୍ତୁଳିପଦା, ଦଣ୍ଡାସାହିରେ ଓହ୍ଲାଇ ରିକ୍‌ସା, ଅଟୋରିକ୍‌ସା, ଓ ଟେକର ଯୋଗେ ମାତ୍ର ୪କିଲୋମିଟର ଦକ୍ଷିଣକୁ ଗଲେ ମନ୍ଦିର ପାଖରେ ପହଞ୍ଚିବେ ।

### ଶାରଳାପୀଠର **ଦର୍ଶନୀୟ ସ୍ଥାନ**

୧ । ଆଦିକବି ଶାରଳାଦାସଙ୍କ ସ୍ମୃତିସ୍ତମ୍ଭ— ଶାରଳା ମନ୍ଦିର ସମ୍ମୁଖରେ

୨ । ଶାରଳା ପର୍ଣ୍ଣୁଶ୍ରମ ସ୍ମୃତିପୀଠ— ମନ୍ଦିରର ପଶ୍ଚିମ ଦିଗରେ ସାରଦା ଏକାଡେମୀ ସରକାରୀ ହାଇସ୍କୁଲର ପ୍ରାଚୀରକୁଲଗି ।

୩ । ଶ୍ରୀ ଶ୍ରୀ କନକେଶ୍ୱର ମହାଲିଙ୍ଗ— କନକପୁର ଦେଉଳ ସର୍ବପ୍ରାଚୀନ ଶିବମନ୍ଦିର, ସାରଦା ଏକାଡେମୀର ଉତ୍ତରଦିଗରେ ।

୪ । ସାରଳାଦାସଙ୍କ ସମାଧିପୀଠ ମୁନିଗୋସେଇଁ ମଠ ବାଲ୍ୟଶାରଳାମନ୍ଦିର ଓ ବୃଦ୍ଧମାତଙ୍ଗୀ ନଦୀ— ତେନ୍ତୁଳିପଦା ।

୫ । ଲଷ୍ଟ୍ରାଚନ୍ଦ୍ରଜଳ ଶ୍ରୀ ଶ୍ରୀ ସିଦ୍ଧଗଣନାଥ ମନ୍ଦିର, ମାଳ କଳ୍ପବଟ ଓ ସାରଳାଗ୍ରାମ— ବଡ଼ସାଟରୋଳ ମନ୍ଦିରର ପଶ୍ଚିମ ଦିଗକୁ ½ କି.ମି. ଦୂରରେ ଅବସ୍ଥିତ ।

୬ । ଶିବବତାର ସିଦ୍ଧଯୋଗୀ ଗୋରେଖନାଥ ମଠ ଓ ଆଶ୍ଚର୍ଯ୍ୟ ବିଶାଳ-ବଟବୃକ୍ଷ, ଧଉଳ ମଠ ଓ ଝରତଙ୍ଗଗଡ (ମୃଗବିହାର)— ଶାରଳା ମନ୍ଦିର ଛଅ/ଆଠ କି.ମି ପଶ୍ଚିମ ଦିଗରେ ଛପଡ଼ା ରେଲୱେ ଷ୍ଟେସନ ନିକଟରେ ଅବସ୍ଥିତ ।

୭ । ତୀର୍ଥମଠ, ପରଶୁରାମ ପୀଠ ଛଟାମଠ, ଶ୍ରୀ ଶ୍ରୀ ଭଗବତୀ ମନ୍ଦିର,(ଗରାମ) ଶ୍ରୀଅରବିନ୍ଦ ଓ ଶ୍ରୀମାଙ୍କ ମାତୃଭବନ— ତୁଳଙ୍ଗ ପୂର୍ବାଭିମୁଖୀ ହୋଇ ଶାରଳା ମନ୍ଦିରର ଛଅ କି.ମି ଦୂରରେ ଅବସ୍ଥିତ ।

୮ । ଶିଶୁ ଅନନ୍ତ ମଠ, ଶ୍ରୀମଦ୍ ବଳଆବାବାଙ୍କ ଆଶ୍ରମ— ମହାନଦୀର ଶାଖା ପାଇକା ତୀରବର୍ତ୍ତୀ । କଟକ ବାଦାମବାଡ଼ି ବା O·M P ଛକରୁ କୋଲର ବସ୍‌ରେ ଯୋଗେ ନଭୁଚା ପାରାଦ୍ୱୀପ ବା ଏରସମା ବସ୍‌ରେ ଆସି ତର୍ତ୍ତୋଲ (ଲକ୍) ପାଖରେ ଓହ୍ଲାଇ ଯିବାକୁ ହୁଏ । ଶାରଳା ପୀଠର ଦଶ କି.ମି ଦୂରରେ ଉତ୍ତର ଦିଗରେ ଅବସ୍ଥିତ ।

୯ । ଶ୍ରୀଶ୍ରୀ ଅଚ୍ୟୁତାନନ୍ଦ ମହାପୁରୁଷଙ୍କ ଜନ୍ମସ୍ଥଳୀ ନେମାଳବଟ—ତାରପୁର-ଠାରୁ ଓହ୍ଲାଇ ପ୍ରାୟ ୧୫ କି.ମି ଦୂରରେ ଶାରଳାପୀଠର ଉତ୍ତର ପଶ୍ଚିମ କୋଣରେ ଅବସ୍ଥିତ ।

୧୦ । ଶ୍ରୀ ଶ୍ରୀ ଗଦାଧର ମହାପୁରୁଷଙ୍କ କୁଦାନଗରୀପୀଠ ଚନ୍ଦ୍ରସୂଳା କୂଳରେ ଜଇପୁରଠାରୁ ଓହ୍ଲାଇ ପ୍ରାୟ ୧୬ କି.ମି ଦୂରରେ ଶାରଳା ପୀଠର ଉତ୍ତର ଦିଗରେ ଅବସ୍ଥିତ (ଗୁରୁବାବାଙ୍କ ଆଶ୍ରମ) ।

୧୧ । ଶ୍ରୀ ଶ୍ରୀ ବୀନାମ୍ବର ମଠ ଓ ପ୍ରସିଦ୍ଧ ଦିଗବାରଣୀ ଠାକୁରାଣୀ— କଟକ ପାରାଦ୍ୱୀପ ରାସ୍ତାର କୋଠକଣାରୁ ଓହ୍ଲାଇ ମହାନଦୀ ପାର ହେଲେ ତିନ କି.ମି ଦୂରରେ ଲଙ୍କାପଡା ଗ୍ରାମରେ ଅବସ୍ଥିତ ।

# ଜନ୍ମନିୟନ୍ତ୍ରଣ
# ଏକ ମହାଭାରତୀୟ ଚିନ୍ତା



ମହାଭାରତରେ ମହୀୟସୀ ନାରୀ, ପାଣ୍ଡବ ଜନନୀ କୁନ୍ତୀ ମାତ୍ର ତିନୋଟି ସନ୍ତାନ ଜାତ କରିଛନ୍ତି । ଜଣେ ଧାର୍ମିକ, ବିନୟୀ ସ୍ଥିତପ୍ରଜ୍ଞ, ବ୍ରହ୍ମଦର୍ଶୀ, ଓ ସତ୍ୟନିଷ୍ଠ ଯୁଧିଷ୍ଠିର । ଦ୍ୱିତୀୟ ପୁତ୍ର ଭୀମ, ବଳଶାଳୀ, ସାହସୀ, ଯୋଦ୍ଧା, ପାଚକବିଦ୍ୟାରେ ଧୁରନ୍ଧର ଭ୍ରାତୃଆଜ୍ଞା ପାଳନକାରୀ ଓ ଶତ୍ରୁ ଦର୍ପହାରୀ । ତୃତୀୟ ପୁତ୍ର ଜ୍ଞାନୀ, ବୀରଶ୍ରେଷ୍ଠ, ନୃତ୍ୟଗୀତରେ ପାରଦର୍ଶୀ ଓ ଦ୍ୱିତୀୟକୃଷ୍ଣ ଅର୍ଜୁନ । ସେହିପରି ମାଦ୍ରୀ ମାତ୍ର ଦୁଇଟି ସନ୍ତାନ ଜନ୍ମ କରିଛନ୍ତି । ଜଣେ ଅଶ୍ୱଚାଳକ, ସୁନ୍ଦର ଶରୀର, ପରୋପକାରୀ ଓ ଦେବକାର୍ଯ୍ୟ ଆଚରଣ ଯୁକ୍ତ ନକୁଳ । ଆଉ ଜଣେ ତ୍ରିକାଳଜ୍ଞ ସହଦେବ । ମାତ୍ର ଗାନ୍ଧାରୀ ଯେଉଁ ଶତପୁତ୍ର ଜାତ କରିଛନ୍ତି, ସାରଳାଙ୍କ ଲେଖନୀରେ ସମସ୍ତେ ଦୁଃଶୀଳ ଦୁରାଚାର ଦୁଷ୍ଟ ପ୍ରକୃତିର । ସମସ୍ତଙ୍କ ନାମର ପ୍ରଥମ ଅକ୍ଷର ଦୁଃ ଅର୍ଥାତ୍ ଖଳ ପ୍ରକୃତିର । ସୁତରାଂ ଦୁଇ ବା ତିନୋଟି ସନ୍ତାନ ଯଥେଷ୍ଟ ।






# କବିତା ବିଭାଗ

"ସୁଖର ଖବର ଏହି ଯେ, ଦିନକୁ ଦିନ ଓଡ଼ିଆ ଆଧୁନିକ କବିତା ତାର ସଁବାଳୁଆ କାୟା ପରିହାର କରି ପ୍ରଜାପତିର ଶନିତ ଡେଣାରେ ନିଜକୁ ଖୋଜୁଛି । ଅଳ୍ପ କେତେ ଜଣଙ୍କର ବୌଦ୍ଧିକ ବିଳାସ ନହୋଇ, ବହୁ ପାଠକଙ୍କର ମନର ଅନୁରଂଜନୀ ହେଉଛି । ସେଇ ଦୃଷ୍ଟିକୋଣରୁ ଏ ସଂଖ୍ୟାର କବିତା ଗୁଡିକ ପ୍ରତିନିଧି ସ୍ଥାନୀୟ ପାଠକମାନଙ୍କର କ୍ରିୟା ପ୍ରତିକ୍ରିୟା ଅପେକ୍ଷାରେ ରହିଲୁ ॥

— ସଂପାଦକ —

# ଜନ୍ମନିୟନ୍ତ୍ରଣ
# ଏକ ମହାଭାରତୀୟ ଚିନ୍ତା

ମହାଭାରତରେ ମହୀୟସୀ ନାରୀ, ପାଣ୍ଡବ ଜନନୀ କୁନ୍ତୀ ମାତ୍ର ତିନୋଟି ସନ୍ତାନ ଜାତ କରିଛନ୍ତି । ଜଣେ ଧାର୍ମିକ, ବିନୟୀ ସ୍ଥିତପ୍ରଜ୍ଞ, ବ୍ରହ୍ମଦର୍ଶୀ, ଓ ସତ୍ୟନିଷ୍ଠ ଯୁଧିଷ୍ଠିର । ଦ୍ୱିତୀୟ ପୁତ୍ର ଭୀମ, ବଳଶାଳୀ, ସାହାସୀ, ଯୋଦ୍ଧା, ପାଚନବିଦ୍ୟାରେ ଧୂରନ୍ଧର ଭାତୃଆଜ୍ଞା ପାଳନକାରୀ ଓ ଶତ୍ରୁ ଦର୍ପହାରୀ । ତୃତୀୟ ପୁତ୍ର ଜ୍ଞାନୀ, ବୀରଶ୍ରେଷ୍ଠ, ନୃତ୍ୟଗୀତରେ ପାରଦର୍ଶୀ ଓ ବିଶିଷ୍ଟକୃଷ୍ଣ ଅର୍ଜୁନ । ସେହିପରି ମାଦ୍ରୀ ମାତ୍ର ଦୁଇଟି ସନ୍ତାନ ଜନ୍ମ କରିଛନ୍ତି । ଜଣେ ଅଶ୍ୱଚାଳକ, ସୁନ୍ଦର ଶରୀର, ପରୋପକାରୀ ଓ ଦେବଜାତ ଆଚରଣ ଯୁକ୍ତ ନକୁଳ । ଆଉ ଜଣେ ତ୍ରିକାଳଜ୍ଞ ସହଦେବ । ମାତ୍ର ଗାନ୍ଧାରୀ ଯେଉଁ ଶତପୁତ୍ର ଜାତ କରିଛନ୍ତି, ସାରଳାଙ୍କ ଲେଖନୀରେ ସମସ୍ତେ ଦୁଃଶୀଳ ଦୁରାଚାର ଦୁଷ୍ଟ ପ୍ରକୃତିର । ସମସ୍ତଙ୍କ ନାମର ପ୍ରଥମ ଅକ୍ଷର ଦୁଃ ଅର୍ଥାତ୍ ଖଳ ପ୍ରକୃତିର । ସୁତରାଂ ଦୁଇ ବା ତିନୋଟି ସନ୍ତାନ ଯଥେଷ୍ଟ ।






# ବିଭାଗ

ସୁଖର ଖବର ଏହି ଯେ, ଦିନକୁ ଦିନ ଓଡ଼ିଆ ଆଧୁନିକ କବିତା ତାର ସଁବାଳୁଆ ଜାମ୍ଫା ପରିହାର କରି ପ୍ରଜାପତିର ଚିତ୍ରିତ ଡେଣାରେ ନିଜକୁ ଖଞ୍ଜୁଛି । ଅଳ୍ପ କେତେ ଜଣଙ୍କର ବୌଦ୍ଧିକ ବିଳାସ ନହୋଇ, ବହୁ ପାଠକଙ୍କର ମନର ଅନୁରଂଜନୀ ହେଉଛି । ସେଇ ଦୃଷ୍ଟିକୋଣରୁ ଏ ସଂଖ୍ୟାର କବିତା ଗୁଡିକ ପ୍ରତିନିଧି ସ୍ଥାନୀୟ ପାଠକମାନଙ୍କର ନିସ୍ପା ତ୍ରୁତନିସ୍ପା ଅପେକ୍ଷାରେ ରହିଲୁ ॥

— ସଂପାଦକ —

ମଙ୍ଗଳା ଚରଣ

# ସାରଳା ସ୍ତୁତି

## ଶୁଦ୍ର ମୁନି ଶାରଳାଦାସଙ୍କ ବିରଚିତ

ଜୟତୁ ଜୟତୁ ମାଗୋ ଶ୍ରୀଚଣ୍ଡୀ ସାରଳା
ଜୟତୁ ଜୟତୁ ମାଗୋ ତୁ ସର୍ବ ମଙ୍ଗଳା ।
ଜୟତୁ ଜୟତୁ ମାଗୋ ମହିଷାମର୍ଦ୍ଦିନୀ
ଜୟତୁ ଜୟତୁ ମାଗୋ ଦେବୀ କାତ୍ୟାୟିନୀ
ଜୟତୁ ଜୟତୁ ମାଗୋ ଚାମୁଣ୍ଡା ଭୈରବୀ
ଜୟତୁ ଜୟତୁ ମାଗୋ ଶଙ୍କର ବଲ୍ଲଭୀ
ଜୟମା ସିଂହବାହିନୀ ଦେବୀ ଖଡ୍‌ଗହସ୍ତା
ଜୟମା ଭକ୍ତ ତାରଣୀ ଜୟଚ୍ଛିନ୍ନ ମସ୍ତା
ରତ୍ନଗିରି ବାସିନୀ ଗୋ ନମୋ କାତ୍ୟାୟିନୀ
ଯେ ତେଜ ପ୍ରକାଶେ ଦେବଗଣ ଜ୍ୟୋତିଘେନ
ସହସ୍ରେକ ଭୁଜ ଦେବୀ ସହସ୍ରେ ଆୟୁଧ
ମାନିନୀ ହୋଇଅସୁର ବଂଶକଲୁ ବଧ ।
ଅଭୟା ପିଙ୍ଗଳା ଜନ୍ତୁରାଜ ଦର୍ପଗଞ୍ଜି
ବନକୋଟି କାତ୍ୟାୟିନୀ ଶସ୍ତ୍ରୁ ଉପୁଜ ।
ଅଗୋଚର ମୂରତି ଗୋ କହ୍ନ କହ୍ନ ମୁଖୀ
ଲହ ଲହ ରସନା ଗୋ ଠହ ଠହ ଆଖି
ଡବ ଡବ ବାଦ୍ୟ ନାଦ ଶ୍ରୀଭୁଜ ଡମ୍ବରୁ
ଶ୍ମଶାନ ବାସିନୀ ଗଳେ ଅସ୍ଥିମାଳା ଉରୁ
ହାଣ ହାଣ ମାର ମାର ଡାକ କୁତୂହଳ
ରଣରଙ୍ଗେ ନାଚୁ ମାଗୋ କର ପଦତୋଳ ॥

ବିବସନ ଶାମ୍ଭବି ଗୋ ତୁ ମାତ ମାତଙ୍ଗୀ
ଝଳକଇ ଶୋଣିତ ତୋ ଦାନ୍ତ ଦାଢ଼ଲାଗି
ଆକାଶେ ଏକ ପାତାଳେ ଆରେକ ତୋ ଓଷ୍ଠ
ବାହନ ଇଚ୍ଛିଲୁ ମାଗୋ ଗଜରପୃଷ୍ଠ
କାଳ କମ ନିଦ୍ରା ତୁଗୋ କାମାକ୍ଷୀ ମୋହିନୀ
ବାହୁରେ ରତ୍ନକଙ୍କଣି ବାଜେ କଣି କଣି ॥
ଉରରେ ଉରଗହାରେ ଶୋହେ ରତ୍ନ ଝିଞ୍ଚି
ହୃଦରେ ମନ୍ଦାର ମାଳ ଦିଶେ ଅତି ତେଜି
ଶିରରେ ରତନମଣି ମୁକୁଟ ଉଜ୍ଜ୍ୱଳ
ଭୁଜରେ ତାଡ଼ ତୋଡ଼ର କର୍ଣ୍ଣେ କର୍ଣ୍ଣଅଳ
ଚଉପୁଟ ଗୃଧ୍ରପୁଟ ନୃତ୍ୟରଙ୍ଗେ ଖେଳ
ଡାକିନୀ ଶାକିନୀଗଣ ସଙ୍ଗେ କୁତୂହଳ
ଚଣ୍ଡ ଘଣ୍ଟା ମହାତପା ବିଜୟା ବିରୂପା
ଟହ ଟହ ହାସିନୀଗୋ ହିଙ୍ଗୁଳା ସ୍ୱରୂପା
ତୁ ମାତା ଯାହାକୁ ବରଦେବ ସୁପ୍ରସନ୍ନେ
ତାହା ଆନ କରିବାକୁ ନାହିଁ ତ୍ରିଭୁବନେ
ଝଙ୍କଡ଼ପୁର ବାସିନୀ କର ତୁ ସୁଦୟା
ମୁଁ ମୂର୍ଖ ପାମର ମୋତେ ନକର ତୁ ମାୟା
ମୁହିଁ ତବ ପୁତ୍ର ମାଗୋ ତୋପାଦେ ଶରଣ
ଶାରଳା ଦାସ ସେବଇ ନିତ୍ୟତୋ ଚରଣ ॥



# ହେ କଳ୍ପ ଲତିକା

ଶ୍ରୀ ମଧୁସୂଦନ ରାଉଳ-ଶାରଳାମନ୍ଦିର

ହେ କଳ୍ପ ଲତିକା ମାଆଟୋ ଗୀତିକା ଗାଇବାରେ ଶ୍ରଦ୍ଧାବହି
ଦୀନକୃଷ୍ଣ ଭଂଜ ରାଧାନାଥ ଆଦି ତୋପଦେ ହେଲେ ଚିନ୍ମୟୀ । ୧

ସୁରମ୍ୟ ଭୂଷଣ ମଣ୍ଡିଲେ ଜତନେ ବରପୁତ୍ର ନାମ ବହି
ଉତ୍କଳ ଭାରତୀ ନାମ ପୂଜ ଏଥି ଲଭିଲେ ତୋତେ ଚିନ୍ମୟୀ । ୨

ତୋ ତୀର୍ଥ ମହିମା ଅସୀମୁ ଅସୀମା ଶ୍ରୁତିପଥେ ଅବଗାହି
ଆଜନମ ମୂର୍ଖ ଆଦିକବି ହେଲେ ତୋ ଆଶୀଷ ଶିରେବହି । ୩

ତୋପୀଠ ମହାତ୍ମ୍ୟ-ସ୍ମରନ ଘେନଲେ ଚନ୍ଦନ ନୃପତି ସାଇଁ
ଷଣ୍ଢିବ୍ରଜବଂଶ କୃପାକଣାଲଭି ଖଞ୍ଜିଲେ ନିତି ମଣୋହିଁ । ୪

ପୁଣି ଏହି ତୀର୍ଥ ମହିମାରେମଜି "ଚିନ୍ତାମଣି" ଗୁଣଗ୍ରାହୀ
"ସାରସ୍ୱତ ତୀର୍ଥ ସୁରମ୍ୟ ଝଙ୍କାର" ବର୍ଣ୍ଣିଗଲେ ମୋକ୍ଷହୋଇ । ୫

ନାହିଁ।ନ୍ତ ବିଦ୍ୱାନ ତୋ ମହାତ୍ମ୍ୟ ଗାନ ବିସ୍ତାର ବର୍ଣ୍ଣିବ କେହି
ମୋସ୍ୱଳ୍ପ ହୃଦୟେ ଦେଇଛୁ ଯାହାମା ଘେନା କର ଦୟାବହି ।୬



# କିଏ ଏହି ମା

୦

ଅନନ୍ତା ଅରୂପା ସର୍ବ ରୂପା ଯେଉଁ ମାତା
କେଉଁ ସ୍ୱରୂପ ମାଆର କରିପାରେ ଚିନ୍ତା
ଅଲକ୍ଷା ନାମ ଯାହାର
କେଉଁ ଯୋଗ ଲକ୍ଷ୍ୟେ ରୂପେ ଦେଖିବି ତାହାର ।୧
ଅଜାଙ୍କୁ ଡାକିବି ମୁଁ ଯେ କାହାର ନନ୍ଦିନୀ
ଅଯୋନି ସମ୍ଭୂତା ମାଆ କାହାର ଭଗିନୀ
ନର୍ମଦା ନାମ ଯାହାର
କେଉଁ ଜଳେ ଧୋଇ ଦେବି ଶ୍ରୀପଦ ତାହାର ।୨
ଯେଉଁ ଜନନୀ ଅଷ୍ଟନ୍ତ୍ର ପ୍ରକୃତି ରୂପିଣୀ
ଚନ୍ଦ୍ର ସୂର୍ଯ୍ୟ ଗ୍ରହ ଚଳେ ଯା ଆଦେଶ ମାନି
ତାଙ୍କୁ କେଉଁ ଫଳ ଫୁଲ
ଆଦରିବ ତାଙ୍କୁ ଦେଲେ କେଉଁ ମତେ ଭଲ ? ।୩
ଜଗନ୍ମୟୀ ମାଆଙ୍କୁ ମୁଁ କେଉଁ ବସ୍ତ୍ରଦେଇ
ସର୍ବ ମନ୍ତ୍ରାଣୀ ପୂଜିବି କେଉଁ ମନ୍ତ୍ର ଗାଇ
ଯେଉଁ ମାଆ ସରସ୍ୱତୀ
କେଉଁ ବାଦ୍ୟ ଛନ୍ଦେ ଗାଇବି ତା ଭକ୍ତିଗୀତ ।୪
ଅପର୍ଣ୍ଣା ଯାହାରନାମ ଯେମା ଅନ୍ନପୂର୍ଣ୍ଣା
କେଉଁ ଭୋଗ ନଇବେଦ୍ୟ ହୋଇବ ମା ହେନା
ବହ୍ନିରୂପିଣୀ ହିଙ୍ଗୁଳା
କେଉଁ ପାପ ସଙ୍ଗେ ତୋଷ ହେବ କ୍ଷମାଶୀଳା ।୫

—*—

# ବୁଡ଼ୁ ନଈ

ଅଧ୍ୟାପକ: **ନାରାୟଣ ଚୌଧୁରୀ**
ଓଡ଼ିଆଭାଷା ଓ ସାହିତ୍ୟ ବିଭାଗ
ଏସ୍. ଭି. ଏମ୍ କଲେଜ, ଜଗତସିଂହପୁର

[୧୯୭୦ ମସିହା, ସାରଳାଦାସ ଶ୍ରାଦ୍ଧୋତ୍ସବରେ ପଠିତ]

ଅକ୍ଷତ ତୋ'ର ନୈସର୍ଗ ଫୁଲଫୁଟା ସେଚିକ୍ଷେତରେ
ଶ୍ରାବଣର କଲ୍ଲୋଳ ଓ କୃଷ୍ଣଚୂଡ଼ା ଫଗୁର ଫଗୁଣ
ତୁଉ କେତେ ନରମାଖି 'ବୁଡ଼ୁନଈ' ତୋଷରେ ଫସଲ
ଅଥଚ ତୁଉଯେ ଖାଲି ଗୋଷ୍ଠୀ ଗୋଷ୍ଠୀ ଦଳର ସଡ଼କ ।

କିଏସେ କହିବ ଆଜ ସେଷରରେ ଆମ୍ବବଉଳାଲ
ତୋଷରେ ଯୋଗଷ କ୍ଷେତ, ସୁନା ସୁନା ହସର ଅଙ୍କୁର
ତୁଯେ, ଦିନେ ଶୋଇଥିଲୁ ଯଉବନ ଫସଲ ହିଡ଼ରେ
ତୁଆଜ ବୁଡ଼ୁନଈ ବୃଦ୍ଧାନଘ ଯେଇ ଗାଁ ତେନ୍ତୁଳିପଦାରେ ।

ତୋ'କୂଳରେ କିଏ ଦିନେ ଗାଁଭି ଗାଇ ମୂର୍ଖଟିଏ ବସି
ଦେଇଗଲା ଏକାତିକୁ କୋଟିହ୍ରଦ ଗର୍ବର ଦୁଲଲୀ
ତା'ପାଇଁ ରଖିଛୁ କସ କହିବୁକ ବୁଡ଼ୁନଈ ଆଜ
ଖାଲିତୋ'ର ମଳଜଳ ଗୋଷ୍ଠୀ ଗୋଷ୍ଠୀ ଦଳର ସାମ୍ରାଜ୍ୟ

ତୁଉଖାଲି ବସିଛୁ ଏଠି ଖାରୁପକ୍ଷୀ ସନ୍ଧ୍ୟାର କପୋତ
ତୋ'ଡ଼େଣାରେ କେତେ ଖୋଟୀ ରଂଗ ରଂଗ ସୂର୍ଯ୍ୟାସ୍ତରଙ୍କଟା

ଆହ୍ନାଲୋକୁ ବୁଡ଼ୁନଙ୍କ ତୋଦେହକୁ ରଂଗାଇଛୁ ଖାଲି
କିଏସେ ବୁଝିବକହ ଏତେବଡ଼ ସୂର୍ଯ୍ୟଠାଏ ଭୁ କୋଳକଲୁ

ତୋ'କୂଳେ ନାହିଁଲେ ଆଜ ପିଚ୍‌ରାସ୍ତା ପ୍ରଗତିରସ୍ତୁପ
ଉଠିନି ମନ୍ଦିର ଏକ, ସ୍ମୃତି ସୌଧ ଆଦିକବି ପାଇଁ
ପବିତ୍ର ତୀର୍ଥରେ ଆଜ ବହୁଦୂରେ ଲୋକ ଲୋଚନରୁ
ସବୁଆଜି ହଜିଯାଏ ସୂର୍ଯ୍ୟପରି ସମୁଦ୍ର ଦେହରେ ।

କବିସ୍ମୃତି ପାଇଁସେଠି ଅକବଏ କରନ୍ତି କଟାଳ
ଗୁଣ୍ଡାମୀ ଷଣ୍ଡାମୀ ଖାଲି ନେତାହେବା ଅର୍ଥଲୁଟିନେବା
ଆଦିକବି କୃତି ଅବା କିଏଥରେ ପଢ଼ିଅଛି କହ
ହସ୍ତିନାର ସିଂହାସନ ପାଇଁ ଖାଲି ଚାଲିଅଛି ଅଧର୍ମରଖେଳ

ତୁମେ ଆଜ ମୌନାବସ୍ଥା ମୌନପରି ମୂକଚନ୍ଦ୍ର ପରି
ଅପହୃତ ରାଜ୍ୟଠାର ବିଡମ୍ବିତ ଗର୍ବିତ ପ୍ରହରୀ

—○—

ଝଂକଡ଼ ପ୍ରଗଣାରେ ବଡ଼ୁନଙ୍କ ପ୍ରବାହିତ । କିମ୍ବଦନ୍ତୀ ଅଛି ଯେମିତି ନଈକୂଳରେ ବସି ସାରଳାଦାସ ତାଙ୍କର ସମସ୍ତ କାବ୍ୟ ଲେଖିଥିଲେ । ତାରି କୂଳରେ ତାଙ୍କର ସ୍ମୃତି ସୌଧ ଅଛି ଏବଂ ମାଘ ସପ୍ତମୀରେ ଶ୍ରାଦ୍ଧୋତ୍ସବ ପାଳିତ ହୁଏ ।



# ସ୍ମୃତି

# ତର୍ପଣ

ଶିବ ପ୍ରସାଦ ନାୟକ

ଯୁଗ ପରେ ଯୁଗ ବିତେ
ସମୟରେ ଗତି ସାଥେ
ସବୁ ହଜେ ଅତୀତର ବିସ୍ମୃତି ଗର୍ଭରେ ।

ହେ ମନୀଷୀ, ପୁଣ୍ୟଶ୍ଲୋକ କବି !
ତବ ସ୍ମୃତି ତବ କୀର୍ତ୍ତି
ଯୁଗ ଜୟୀ, କାଳଜୟୀ, ଚିରନ୍ତନ ଏକାନ୍ତ ବକ୍ଷରେ

ତବ ଯଶ, ପଉରୁଷ
ତବ ଗୀତ, ପୁରାଣ ସଙ୍ଗୀତ
ଏ ଜାତିର କୋଟି ଗାଁ କଥା କୁହେ
ଗୋଟି ଗୋଟି କାହାଣୀ ଛଳରେ ।

ଏ ମାଟିର ବିଲ, ବଣ, ଗିରି, ନଦୀ
ତବ ଗାଥା ଗାଏ । ତବ ଇତିହାସ
ସମୟର କଥା କୁହେ ହଳିଆ ଗୀତରେ ।

ହେ ମୁନି ଶ୍ରେଷ୍ଠ !
ମାତାର ଆର୍ଶୀଷ ଲଭି
ଏ ଜାତିକୁ ଦେଇଗଲ ଯାହା

ଅତୁଲ, ଅକ୍ଷୟ ତାହା ଯୁଗ ଯୁଗ ପାଇଁ
ଆମେ ସବୁ ଯେତେ ଆଜ ଉତ୍ତର ଦାୟାଦ
ତବ ପଦେ ଢାଳୁ ଖାଲି ଭକ୍ତିର ନୈବେଦ୍ୟ !!

**ଯୁଗ୍ମ-ସଂପାଦକ**
ଝଙ୍କାର ସାରସ୍ୱତ ପରିଷଦ



# କାମନାର ବିନାଶରେ

କୃଷ୍ଣ ମିଶ୍ର
ସ୍ୱାସ୍ଥ୍ୟକେନ୍ଦ୍ର, ଜୟପୁର

ଲୁବ୍ଧ ଆବେଗର ବୁଦ୍ଧଟିଏ ହୋଇ
କେଉଁ ସ୍ୱାର୍ଥ ପାଇଁ ଜଗତ ଜନଙ୍କ ସକାଶେ
ନିର୍ବାଣର ଶସ୍ତା ମାର୍ଗଟିଏର ପ୍ରଚାର କରିଛ କହି ପାରିବ ନବମ ଅବତାର
ହଁ, ମନେ ପଡ଼ୁଛି
କାମନାର ବିନାଶରେ ଦୁଃଖର ବିନାଶ ବୋଲି
ମହତ ବାଣୀ କେବଏ ଉପର ଠାଉରିଆରେ
ମାନବ ଜାତି ଆଡ଼କୁ ଫିଙ୍ଗି ଦେବା ପୂର୍ବରୁ
ଗୁଣ୍ଡିଏ ମହାପ୍ରସାଦ ଭିତରେ ଠିଆ ହୋଇ କୁହତ
ତୁମେ କ'ଣ ଜୀବନ ଯାବତ୍ କାମନାର ଯାଦୁକନ୍ୟାର
ଧଳା ଅବା କଳା ଫୁଲ ଶୁଙ୍ଘି ମେଣ୍ଢାଟିଏ ହୋଇ ନଥିଲ ?
ଓଃ, ସେଇଥିପାଇଁ ତାହେଲେ ତୁମେ ନିର୍ବାଣ ବରିନେଲ
ଏବଂ ପରମାତ୍ମାରେ ବିଲୀନ ହେଲ ଆତ୍ମାକୁ ପରିତ୍ୟାଗ କରି
ଆତ୍ମା ସାଥିରେ କାମନା ଅଂଗାଙ୍ଗୀ ଭାବେ ଜଡ଼ିତ ବୋଲି ? ନାଇଁ !
ଆଚ୍ଛା, ଆତ୍ମାକୁ ଜାଣି ଶୁଣି ହତ୍ୟା କରିବା
ଯଦି ଅନ୍ୟାୟରେ ଲେଖା ନଗଲ୍
ତେବେ ପୁଣି ଥରେ ଗୁଣ୍ଡିଏ ମହାପ୍ରସାଦ ଭିତରେ ଠିଆ ହୋଇ କୁହତ ନବମ ଅବତାର
ଜୀବହତ୍ୟା କେଉଁଥିନେଇ ମହାପାପରେ ପରିଣତ ହେବ ?
ଜଗତ ବା କି ଲଭ ପାଇବ ଶସ୍ତା ସୁଲଭ ନିର୍ବାଣରୁ

ଯାବତୀୟ କାମନା ବିନାଶ ପାଇଁ
ଦୁଃଖର ପଥକେ ବିନାଶ ନ ଘଟୁ ??

କାମନାର ବିନାଶରେ ଦୁଃଖର ବିନାଶ ହେଲେ
ତୁମକୁ ବି ପୁଣି ଥରେ ମରିବାକୁ ହେବ ପ୍ରଭୁ
ଜବ ଶବର ହାତରେ ଶିଆଳୀ ଲଠାରେ ନୁହେଁ
ସରଗର ନନ୍ଦନ କାନନେ ।
ସକଳ ଆୟୁଧ ପ୍ରଭୁ
ଯାହା ଯାହା ଦେଇଥିଲ ଜଗତ ଜନମ ହାତେ ମହାକ୍ଷା ନିଧନ କାଳେ
କାମନାର ବିନାଶରେ ସେ ସମସ୍ତ ଧାରଶୂନ୍ୟ ହେବ ।
ନିଜର ଭେଳା ବୁଡିଲେ
କେଉଠି ମିଳିବ ଠାପୁ
ଯୋଉଠାରେ ଠିଆ ହୋଇ ବିନିରନ୍ତ ଚାହୁଁଥିବ
ମନୁସ୍ମୃତ ମନୁଷ୍ୟର ଚଦ୍ଦଶ ପ୍ରହର ଲୀଳା ।
ଦୁଃସ୍ୱପ୍ନର ଚରମ ଲଗ୍ନ ଭିତରେ
ଦୁଃଖ ସବୁ ବହିଆସେ କାମନାର ସ୍ତୂପପାଟିଏ ପରିତ୍ୟାଗ କରି
ପାତାଳରୁ ପୃଥିବୀର ଫାଟ ଦେଇ ଦେଇ;
ଆହୁରି ବି ସରଗର ସବୁ ଦୁଃଖ
ଏ ଯାବତ୍ ପୃଥିବୀକୁ ଆସିନାହିଁ ଯାହା
କାମନାର ବିନାଶରେ ସେମାନଙ୍କ ଲୀଳା ଇତି ହେଲେ
ତୁମର ବି ଇତି ହେବ ଗୋଲକ ଭୂଲୋକ, ଆଉ ଦ୍ୟୁଲୋକ ଧାମରୁ ।

କାମନାର ବିନାଶରେ ଦୁଃଖର ବିନାଶ ହେଲେ
କ'ଣ ନେଇ ତିଷ୍ଠିବ ଏ ମାନବ ସମାଜ ?

ତୁମ ପରି ଯୋଗୀଟିଏ ହୋଇ ନିର୍ବାଣ ଆଦରି ନେଲେ
କ'ଣ ପାଇଁ ସୃଷ୍ଟି ହେବ ଯଶୋଧାରା ?
କ'ଣ ହେବ ରାହୁଲର ପରିଚୟ ଷଠୀଘର ଠାରୁ
ଶ୍ମଶାନର ଶେଷ ଚିତା ଯାଏ ???
ଥରେ ଯଦି  କାମନାଟି ପ୍ରେମମୟ କୋଷ ପରିତ୍ୟାଗ କରି
ଉଡ଼ିଯିବ ପ୍ରଜାପତିଟିଏ
ଆଉ ସେ ଫେରିବ ନାହିଁ ସଜନା ଡାଳକୁ ।
ଫୁଲେ ଫୁଲେ ଅବଶୋଷ ଭର୍ତ୍ତିହେବ
ସୃଷ୍ଟିର ସର୍ଜ୍ଜନା ହେବ କପୋଳ-କଳ୍ପିତ ।

କାମନାର ରେଖାତଳେ
ପ୍ରତିଟି ମଣିଷ ଏଠି କୁନ କୁନ ବିନ୍ଦୁଟିଏ
ତୁମ ଶଙ୍ଖ, ତୁମ ଚକ୍ର, ତୁମ ନାଭି ମାୟାପରି
ଧୀରେ ଧୀରେ ଓ ତାହାର ମଗ୍ନ ଚୈତନ୍ୟରେ
କାମନାର ଅଙ୍କୁରୋଦ୍‌ଗମ ଚରିତାର୍ଥ ଇଚ୍ଛାଙ୍କର
ଜଳ ବାୟୁ ଉତ୍ତାପ ମଧ୍ୟରେ ।
କାମନାର ଛଦ୍ମବେଶ ଚତୁର୍ଦ୍ଦିଗେ ଦୃଶ୍ୟ ହୁଏ
ବ୍ୟକ୍ତିଗତ ଇଲାକାରେ ପରାଣକୁ ଛିନ୍ ଭିନ୍ କରି କରି
ମାନବର ଅସ୍ତିତ୍ୱ ସୂତ୍ରଏ ।

କାମନାର ବିନାଶରେ ବିଫଳ ଏ ପୃଥିବୀରୁ
ତୁମ ନାମ ଲୋପ ହେଲେ ଚିରଦିନ ଲାଗି
କେହି ହେଲେ ଥରୁଟିଏ ଶବବନ
ପୃଥ୍ୱୀ ଉଦ୍ଧାରଣ ଲାଗି କଅଁ ତୁମେ ଅବତାର ହୁଅ ?

ସେଇଥି ନେଇଛ ପ୍ରଭୁ
ଶସ୍ତା ଏକ ନିର୍ବାଣର ପ୍ରହସନ
ଆପଣା ସ୍ତୁଏଁ ଆସିବ ଆବୋର ଆବୋର ସବୁ
ମନୁସ୍ମୃତ ମନୁଷ୍ୟ ପରାଣ ।
ଏ ନିର୍ବାଣ ନୁହେଁ ପ୍ରଭୁ କାମନା ବିନାଶ ପାଇଁ
ଦୁଃଖର ବିନାଶ ପାଇଁ,
ଏ ନିର୍ବାଣ ଅଭିପ୍ରେତ ସେଇ ନେଇ
ଯୋଉ ନେଇ ଜୀବହତ୍ୟା ମହାପାପଟିଏ ।



# କିଏ ତୁମେ ???

ଶ୍ରୀ ପଦ୍ମଲୋଚନ ଜେନା
ପୁରାତନ ଛାତ୍ର
ଭଂଜନଗର ମହାବିଦ୍ୟାଳୟ, ଗଞ୍ଜାମ

କିଏ ?
କିଏ ତୁମେ ? ?

ମୁଁ ଦେଖେ ତୁମକୁ ବିଶ୍ବ ବ୍ରହ୍ମାଣ୍ଡରେ
ମୁଁ ପୂଜେ ତୁମକୁ ହସ ଅଶ୍ରୁ ଭରେ ।

ମୁଁ ଧ୍ୟାଏ ତୁମକୁ ଏକାଗ୍ରଚିତ୍ତରେ
ତୁମେ ସ୍ୱର ତୋଳ ମୋ ହୃଦତନ୍ତ୍ରରେ ।

ମୁଁ ବୀଣା ବଜାଏ ତୁମରି ମନ୍ତ୍ରରେ
ମୁଁ ଗୁହ୍ନେ ତୁମକୁ ଅନ୍ତର ମଧ୍ୟରେ ।

ମୁଁ ଡାକେ ତୁମକୁ ଦିବସ ରଜନୀରେ
ମୁଁ ଭଲ ପାଏ ସମଗ୍ର ଶୀର୍ଷରେ ।

ମୁଁ ଭ୍ରମୁଥାଏ ତୁମରି ପାର୍ଶ୍ଵରେ
ମୁଁ କାର୍ଯ୍ୟ କରେ ତୁମରି ଆଦେଶେ ।

ମୁଁ ପୁଲକି ଉଠେ ତୁମରି ପରଶେ
ମୁଁ ହୁଏ ଚକିତ ତୁମରି ବିକାଶେ ।



ମୁଁ ଦୁଃଖକରେ ତୁମର ସକାଶେ
ମୁଁ ସନ୍ଧାନ କରେ ଏଦ୍ଭୁଦ ଆକାଶେ ॥

ମୋତେ ଜାଗାଦଅ ତୁମର ପାରୁଶେ
ମୋତେ ଢେନତୁମେ ତୁମ ଜଗତରେ ।

ମୋତେ ସ୍ଥାନ ଦଅ ତୁମର ଅନ୍ତରେ
ମୋତେ ରଖ ତୁମେ ତୁମର ମାନସେ ।
ମୁଁ ସେବବ ପାଦ ଅତ୍ୟନ୍ତ ଉଲ୍ଲାସ ॥



# ସ୍ମୃତି ତର୍ପଣ

୦

ସ୍ୱର୍ଗତ ସାଥୀ ନଶାମଣି ଖୁଣ୍ଟିଆଙ୍କ ଦ୍ୱିତୀୟ ଶ୍ରାଦ୍ଧ ବାର୍ଷିକ ଉପଲକ୍ଷେ । ମୁଖ୍ୟ ଅତିଥି **ଶ୍ରୀଯୁକ୍ତ ବସନ୍ତକୁମାର ବିଶ୍ୱାଳ** ଓ ସମସ୍ତ ସହକାରୀ ବୃନ୍ଦ ଉପସ୍ଥଣରେ ତା ୬।୮।୮୪ରିଖ ଖଣ୍ଡାସାହି ମଧ୍ୟଇଂରାଜୀ ବିଦ୍ୟାଳୟ ପ୍ରାଙ୍ଗଣରେ ଆୟୋଜିତ ଶ୍ରାଦ୍ଧୋତ୍ସବରେ ପଠିତ ।

ରଚନା- **ଶ୍ରୀ ରମାକାନ୍ତ ରାଉଳ**
କନକପୁର, ଝିଙ୍କଡ଼

ସର୍ବ ଭାରତୀୟ ଶ୍ରମିକ ନେତାହେ ସ୍ୱର୍ଗତ ନଶାମଣି ଖୁଣ୍ଟିଆ
ସର୍ବ ହୃଦର ସାଥି ଥିବାରୁତ ସର୍ବଜନାଦୃତ ତୁମର ନାଆଁ
ବିପ୍ଳବୀ ତୁମ ଭାଷଣରେ ଯେବେ ବହି ଯାଉଥିଲା ବିପ୍ଳବ ବାଆ
କିଏ ଜାଣିଥିଲା ହଠାତ ଏପରି ଛାଡ଼ି ଚାଲିଯିବ ଏଇ ଦୁନିଆଁ
ତୁମେତ ଅଗ୍ନିଶିଖା
ସମାଜ ବାଦର ଦୀକ୍ଷା
କଥା ପଦେ ପଦେ ଭରିରହିଥିଲା (ଶାଶ୍ୱତ ମହତ ଶିକ୍ଷା) ॥୧

ଯାହା ପୂର୍ବରୁ ଧରାଇ ଦେଇଛୁ ସେହିପରି ଏକ ନେତା
ନବ-ଉତ୍କଳ ନବ-ନିର୍ମାତା ସେ ସର୍ବମୟ ସେ କର୍ତ୍ତା
କର୍ମେ ଛତ୍ରପତି ଧର୍ମେ ବଳିଆର ବଇରି ଦର୍ପ ହାରି
ମହତ କାର୍ଯ୍ୟ ସଦା ବ୍ରତଯାର ନିକଳି ମଧୁର ଗିରି

ତୁମେ କାଳ ମହା ଯାତ୍ରା
ନିଷ୍ଠୁର ନିୟତି ଦେଲାନି ସମୟ ଦେଖିବାକୁ ଆମ ଯାତ୍ରା ॥୨

ତୁମେ ଯେଉଁଦିନ ଶେଷଥର ପାଇଁ ଆସିଥିଲ ଭଦ୍ରୋଳ
ମନେ ଭାବଥିଲ ମୋଜନ୍ମ ମାଟିରେ ଗଢ଼ାହେବ 'ସୂତାକଳ'
ବିଦେଶରୁ ଯେଦିନ ମୋଦେଶ ଶ୍ରମିକ ଫେରିବ ଛଟେଇହୋଇ
ବାରଦ୍ୱାରହୋଇ ବୁଲୁଥିବଆହା ବଂଚିରହିବା ପାଇଁ
(ସେ) ଏଇଠି ପାଇବ କାମ
କଲିକତା ଆଉ ଫେରିଯିବନିସେ କରିବାକୁ କୁଲିକାମ ॥୩

ସୂତାକଳ ଶୁଭସ୍ତମ୍ଭରେ 'ବେଲ୍ଟନ' ପରି ସବୁ ଦେଖିବାକୁ
ସେହିଦିନୁ ସବୁଦିନ ପାଇଁତୁମେ ଗ୍ଭଡ଼ିକି ଗଲ ଆମକୁ ?
ନଅ ମାସ କାଳ ମଉନେ ରହିଲ ନକହିଲ ପଦେ କଥା
କଥା କୁହ କଥା କୁହ ? କେତେ ଅଳି କୁହିଲନି ଯେତେବ୍ୟଥା
ପବନ ମହା ପ୍ରାୟାଣ
ଦିବସରେ ସମବେତ ସାର୍ଥୀବୃନ୍ଦ କରୁଛୁ ସ୍ମୃତି ତର୍ପଣ ॥୪

ତୁମ ଶ୍ରଦ୍ଧାପାତ୍ର ବସନ୍ତ ବାବୁଙ୍କ ନୂତନ ନେତୃତ୍ୱ ବଳେ
ତୁମର କୃଷକ ମୁହେଁ ହସଫୁଟେ ଆଜ ତୁମେ ଭଦ୍ରୋଳେ
ତୁମେ ହାତଗଢା ଶ୍ରମିକ ଗଢ଼ୁଛୁ ପାରଦ୍ୱୀପ ଉପକୂଳେ
ସାରକାରଖାନା ଖୋଲିଯିବ ଯାହା କେଇଗୋଟାଦିନ ପରେ
ଶାନ୍ତ ଧାମରେ ବସି
ନିର୍ଣ୍ଣିନ୍ତରେ ଆଜ ଶୋଇପଡ଼ିଲଯେ ହେଇଥାନ୍ତ କେତେ ଖୁସି ?

ଧର୍ମାନ୍ଧତା ଦୂରକରି ଉଠାଇଲ ମହିଷ ବଳୀ କୁପ୍ରଥା
ହରିଜନ କଲେ ମନ୍ଦିରେ ପ୍ରବେଶ ଭାଙ୍ଗି ଦେବ ଜାତି ପ୍ରଥା
ସାମ୍ୟ ବାଣୀର ମହତ୍ତ୍ୱ ରଖିଲ କୁସଂସ୍କାର ଦୂର କରି
ମୂକସାକ୍ଷୀତାର 'ଶାରଳା ମନ୍ଦିର' ରହି ରହିଛି ତୋରି
ବାଧ ହେବ ଇତିହାସ
ଅମ୍ଳାନ ଅକ୍ଷରେ ଲେଖିଯିବ । ଯାଇଁ ତୁମରି ଅକ୍ଷୟ ଯଶ ।।୬

ତୁମ ଶିରଧାର ପ୍ରତିଦାନପାଇଁ ଆମେ ସମସ୍ତେ
ସମବେତ ତୁମ ପୀଠରେ ହେ ଖୁଣ୍ଟିଆ ନମସ୍ତେ
ଧନ୍ୟ ତୁମେ ବୀର ବିପ୍ଳବୀ ସ୍ୱାଧିନତା ସଂଗ୍ରାମୀ
ଧନ୍ୟ ତୁମ ଯଶ ପୌରୁଷ ଧନ୍ୟ ଏ ଜନ୍ମ ଭୂମୀ
ଦେବ ଲୋକରେ ବସି
ପ୍ରିୟ ପରିଜନ ଦର୍ଶନେ ନିଶ୍ଚେ ହେଇବଟିକାଏ ଖୁସି ।।୭



## ମା

# ଶାରଳା ଭଜନ

ରଚନା-ଶ୍ରୀ ନରେନ୍ଦ୍ର କୁମାର ସାହୁ
(ଶାରଳା ତୈଳିକ ବୈଶ୍ୟ) ମହାସଙ୍ଘ

ଜୟମା ଜନନୀ ସିଂହବାହିନୀ ଆଦ୍ୟାଶକ୍ତି ମାଆ ମୋର
ସନ୍ତାନରେ ଦୟାକରମା ଅଭୟା କୃପାଭଣ୍ଡାରରୁ ତୋର ।।ଘୋଷା

ବନ୍ଦୁଛି ଜନନୀ ତୋ ଚରଣ ତଳେ
ଦୟାକଲେ ପଦ ଗାଇବମୁଁ ହେଲେ
ତୋଦୟା ନହେଲେ ଏମହୀ ମଣ୍ଡଳେ
ବାକ୍ୟନଷ୍ଟ ହେବ କାହିଁରେ ।୧

ମୂର୍ଖ କାଳିଦାସ ତୋକରୁଣା ବଳେ
ମହାପଣ୍ଡିତସେ ଖ୍ୟାତ ଏ ଧରାରେ
ସନ୍ଥ ସିଦ୍ଧେଶ୍ୱର ତେଲୁଗୁ ପଦାର ରଚିଲେ ଭାରତ ସାର ।୨

ବାରମାସଯାକ ତୋପୀଠ ଗହଳ
ଜନ ଗହଳରେ ପଡଇ ଉଛୁଳ
ନାନା ଦେଶୁ ଭକ୍ତ ମାନେ ଆସୁଥାନ୍ତି ଦର୍ଶନ ଭିଳାଷେ ତୋର ୩

ସେହି ମା ପୀଠରେ ଜନମ ମୋହର
ମୋପାଇଁ କରୁଣା ଊଣା କି ପ୍ରକାର
କରମା ସୁଦୟା ଆଗୋ ମହାମାୟା ଚରଣେ ଶରଣ ତୋର ୪

—*—

# ଆବାହନୀ

ପୀତାମ୍ବର ରାଉତ

ହେଦେବ!

କାଶଧବଳିତ ଶିଶିରସ୍ନାତ ଅଗିଣର ପ୍ରଥମ ସକାଳରେ
ରୌଦ୍ରଦୀପ୍ତ ନିର୍ମେଘ ଆକାଶର ମୋହଗ୍ରସ୍ତ ଆବରଣତଳେ
ମୋର ଏ ଅପର୍ଯ୍ୟାପ୍ତ ଆଶାବଳସ୍ଫୁରିତ ଶୁଚଗ୍ରସ୍ତ ଭକ୍ତପୁଷ୍ପାଂଜଳିରେ
ତୋର·

ତୋର ସ୍ଫଟିକସ୍ୱଚ୍ଛ ବୈଦୁର୍ଯ୍ୟ କଣ୍ଠ ପରିହିତ
ତପ୍ତକାଂଚନ ଆଭାସ୍ଫୁରିତ ମୋହମୟୀ ରୂପ ସନ୍ଦର୍ଶନରେ
ଭାବାବେଗରେ ମୁଁ ଅନ୍ଧ ।

କରୁଣାସେବିତ ପ୍ରଶାନ୍ତଉଦ୍ବେଳିତ, ମାଧର୍ଯ୍ୟମଣ୍ଡିତ
ଚନ୍ଦ୍ରୋଲ୍ଲାସକାଶ ତୋର ପ୍ରସନ୍ନ ଦୃଷ୍ଟିପାତରେ
ଆନନ୍ଦଆତିଶଯ୍ୟରେ ମୁଁ ମୂକ
କନକଚଂପାନନ୍ଦତୋର ସ୍ୱର୍ଣ୍ଣାଭଅଂଙ୍ଗୁଳି ସ୍ପର୍ଶିତ
ରୁଚିର ବିପଞ୍ଚର ଅପରୂପ ସ୍ୱର୍ଗୀୟ ସ୍ୱନ
ମାନସ ପଟରେ ଝଂକୃତ, ନିନାଦିତ

ସ୍ଥାବର ଜଙ୍ଗମରୁ କୀଟ ପତଙ୍ଗ
ଶବ୍ଦରୁ ବ୍ରହ୍ମ

ଭୂଲୋକରୁ ଦ୍ୟୁଲୋକ ପର୍ଯ୍ୟନ୍ତ
ଅଚିନ୍ତ୍ୟ, ଅବ୍ୟକ୍ତ ତୋର ମାୟାରେ
ବିମୋହିତ, ବିଳସିତ, ବିଚକିତ

ହେ ଦେବ !
ତୋର ଅସ୍ତିତ୍ୱ ସଂପର୍କିତ
ଅନ୍ତହୀନ ଅସ୍ଥିରତା ବିଳମ୍ବିତ ଉତ୍ପୀଡ଼କ ଜିଜ୍ଞାସା
ଆଜି ପରିହତ ବିଲୁପ୍ତ ।

ଭକ୍ତଅନୁପମଙ୍କୁ ଶପସ୍ୱୀଉତ୍ତମରେ
ବାଳଶଙ୍କୁ ଜାଗୀଶରେ
ପରିଣତ କରିବାରେ ତୋର ଅପାର ମହିମା
ସ୍ୱୀକୃତ, ସତ୍ୟ, ଅବଧାରିତ ।

ହେ ଦେବ !
ପାର୍ଥିବ ବିଷାଦର ବ୍ୟାଧିତ ଇଲାକାରୁ
ଅନାଗତ ସୁଖବୋଳା ସୁବର୍ଣ୍ଣ ମୁହୂର୍ତ୍ତିକୁ ଅପେକ୍ଷାରତ
ନିର୍ବେଦ, ତାପକ୍ଳିଷ୍ଟ
ଅଗଣିତ ମନୁପୁତ୍ରଙ୍କ ଉଦାର କଣ୍ଠରେ
"ତ୍ୱୟି ପ୍ରସନ୍ନେ କିମିହାସ୍ତ୍ୟଲଭ୍ୟଂ" ଆଜି
ସରବେ ଉଦ୍‌ଘୋଷିତ, ଅନୁରଣିତ ।

×

ସଂପାଦକ ଝଂକଡ଼ ସାରସ୍ୱତ ପରିଷଦ
କନକପୁର

# ମହାଭାରତୀୟ ଭାବନାରେ ସମନ୍ୱୟବାଦ

ସାରଳାପୀଠରେ ପ୍ରଦତ୍ତ ଭାଷଣରୁ ଉଦ୍ଧୃତ- ଅଧ୍ୟାପକ **ଶ୍ରୀ ତାରେଶ୍ୱର ସାହୁ**
ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ

ଥରେ ଗୋଟିଏ ରାଜାଙ୍କର ସ୍ୱୟଂବର ସଭା ହେଉଥାଏ । ରାଜକୁମାରୀ ବରଣମାଳା ଧରି; ପତିନିର୍ବାଚନ ପାଇଁ ସହଚରୀ ମାନଙ୍କ ସହିତ ସଭା ପରିକ୍ରମା କରୁଥାଏ ଜଣେ ସନ୍ୟାସୀ ସେଇ ସ୍ୱୟଂବର ସଭା ଦେଖିବାପାଇଁ ସେଠାରେ ଉପସ୍ଥିତ ଥିଲେ । ଆକସ୍ମିକଭାବେ ସେହି ତରୁଣ ସନ୍ୟାସୀ ରାଜକୁମାରୀଙ୍କର ଦୃଷ୍ଟି ପଥାରୁଢ଼ ହେଲେ । ତରୁଣ ସନ୍ୟାସୀଙ୍କର ତେଜୋ-ଦୀପ୍ତଶରୀର ଓ ଆକର୍ଷଣୀୟ ମୁଖ ମଣ୍ଡଳରେ ଦେଖି ରାଜକୁମାରୀ ତାଙ୍କର ଗଳାରେ ଧରିଥିବା ବରଣମାଳାଟି ଲମ୍ବାଇଦେଲେ ।

ସନ୍ୟାସୀ କହିଲେ-"ରାଜକୁମାରୀ ! ବିବାହ କରିବା ମୋର ଧର୍ମନୁହେଁ ବରଣମାଳାଟି ଫେରାଇନେଇ କୌଣସି ଏକ ଯୁବରାଜଙ୍କର ଗଳାମଣ୍ଡନ କରନ୍ତୁ"। ରାଜକନ୍ୟା ଅତ୍ୟନ୍ତ ଭାବାବେସରେ ସନ୍ୟାସୀଙ୍କ ପାଦତଳେ ପ୍ରଣିପାତ କରି କହିଲେ "ନାଁ""ନାଁ" ସେକଥା କୁହନ୍ତୁନ । ମୁଁ ହିନ୍ଦୁନାରୀ । ଆପଣହିଁ ମୋର ପ୍ରଥମ ଓ ଶେଷ ସ୍ୱାମୀ । ମୋତେ ଦୟାପୂର୍ବକ ଆପଣଙ୍କର ସେବିକା ରୂପେ ଗ୍ରହଣ କରନ୍ତୁ । ସନ୍ୟାସୀ ଦେଖିଲେ ରାଜକୁମାରୀଙ୍କ କବଳରୁ ମୁକ୍ତ ହେବା ସହଜସାଧ୍ୟ ନୁହେଁ । ତେଣୁ ଦ୍ୱାର ନିକଟକୁ ଟିକେ ଦୂରେଇ ଯାଇ

ବରଣ ମାଳାଟି ରାଜକନ୍ୟା ନିକଟକୁ ନିକ୍ଷେପ କରି ଜଙ୍ଗଲରେ ଥିବା ନିଜ ଆଶ୍ରମ ଆଡକୁ ଦୌଡ଼ିପଳେଇଲେ । ରାଜକନ୍ୟା ମଧ୍ୟ ମନୋନୀତ ପତିର ଅନୁଧାବନ କଲେ । ରାଜା କନ୍ୟାର ପିତାଦୃଷ୍ଟିରୁ ପଦମର୍ଯ୍ୟାଦା ଓ ବଂଶ ମର୍ଯ୍ୟାଦା ରକ୍ଷା କରିବାପାଇଁ ସେମାନଙ୍କର ଗତିପଥକୁ ଅନ୍ୱେଷଣ କଲେ । ମନ୍ତ୍ରୀ ଦେଖିଲେ ରାଜା କଣ-କୌଣସି ଗ୍ରସ୍ତ କାର୍ଯ୍ୟକ୍ଷମ ନଥାଇ ବାହାରିଗଲେ ରକ୍ଷଣା ବକ୍ଷଣା ଦାୟିତ୍ୱ ମୋଉପରେ ତେଣୁ ମନ୍ତ୍ରୀମଧ୍ୟ ରାଜାଙ୍କ ପଛେ ପଛେ ଯାତ୍ରାରମ୍ଭ କଲେ

ସନ୍ୟାସୀ ଯେପରି ଜଙ୍ଗଲ ଭିତରେ ଅବିଶ୍ରାନ୍ତ ଗତିରେ ଧାବମାନ ହେଉଥାନ୍ତି ରାଜାକନ୍ୟା ମଧ୍ୟ ସେହିପରି ବନର କଣ୍ଟକିତ ପଥରେ ସନ୍ୟାସୀଙ୍କ ଗତିପଥକୁ ଅନ୍ୱେଷଣ କରୁଥାନ୍ତି । ରାଜାମଧ୍ୟ କନ୍ୟାର ପଛେ ପଛେ ତାକୁ ଫେରାଇ ଆଣିବା ପାଇଁ ଧାଇଁଥାନ୍ତି । ସନ୍ୟାସୀ କିଛିଦୂର ଯାଇ ପଛକୁ ଫେରିଚାହିଁ ଦେଖନ୍ତିତ ରାଜକନ୍ୟା ଦୌଡ଼ୁଛି । ସନ୍ୟାସୀ ପୁଣି ବେଗମାନ ହୋଇ ଧାଇଁବାରେ ଲାଗନ୍ତି । ଅନ୍ୟନ୍ୟୋପାୟ ହୋଇ ସନ୍ୟାସୀ ଅରଣ୍ୟରେ ଏକ ବିଶାଳ ବୃକ୍ଷର କୋଟର ଭିତରେ ଆତ୍ମଗୋପନ କଲେ । ଦୈବାତ୍ ରାଜକନ୍ୟା ସେହି ବୃକ୍ଷରେ ଧକ୍‌କା ହେବାରୁ ସଜ୍ଞାହୀନ ଅବସ୍ଥାରେ ଗଛ-ମୂଳେ ପଡିଗଲେ । ଅଳ୍ପସମୟ ମଧ୍ୟରେ ରାଜା ସେହିପଥରେ ଆସୁ ଆସୁ ଆଦରଣୀୟା ଅଲିଅଳି କନ୍ୟାକୁ ଦେଖି ତାର ଚେତନା ଫେରାଇ ଆଣିବାକୁ ଚେଷ୍ଟାକଲେ । ସଙ୍ଗେସଙ୍ଗେ ମନ୍ତ୍ରୀ ମଧ୍ୟ ସେଠାରେ ଉପସ୍ଥିତ ହୋଇ ଦେଖିଲେ । ରାଜା ଏଇଠି ରାଜକନ୍ୟା ମଧ୍ୟ ଏଇଠି । ମୋର ଆଉ କେଉଁଆଡ଼େ ଯିବା ଆବଶ୍ୟକ ନାହିଁ ।

ଶୀତଦିନ ସନ୍ଧ୍ୟା ଉପଗତ ହୋଇଛି । ଶ୍ୱାପଦ ଶଙ୍କୁଳ ଅଭୟାରଣ୍ୟରେ ଅନ୍ଧକାର ମାଡି ଆସିଛି । କେହି କୁଆଡେ ଯିବାର ଉପାୟ ନାହିଁ ସେହି

ବିଶାଳ ଦ୍ରୁମ ହୋଇଛି ସମସ୍ତଙ୍କର ଆଶ୍ରୟସ୍ଥଳୀ । ବୃକ୍ଷଡ଼ାଳରେ ଦୁଇଟି ପକ୍ଷୀ ପକ୍ଷିଣୀ ନିଡ଼ବାନ୍ଧି ରହିଥାଆନ୍ତି । ତାଙ୍କର ଯୋଡ଼ିଏ ଶିଶୁଶାବକ । ପକ୍ଷିପକ୍ଷିଣୀ ଦୁହେଁ କଥାବାର୍ତ୍ତା ହେଲେ-ଦେଖ ଆମେ ସବୁ କୁଟା କାଠି ଯୋଡ଼ି ନିଡ଼ ବାନ୍ଧିଛୁ । ଶିଶୁ ଶାବକ ମାନଙ୍କୁ କୋଳରେ ଧରି ଏ ଶୀତବର୍ଷରେ କେଡ଼େ ଉଷୁମରେ ଶୋଇ ଯାଇଛେ । ଅଥଚ ଗଛ ମୂଳରେ ଆମର ଅତିଥି ମାନେ ଭୟଙ୍କର ଅନ୍ଧକାରଭିତରେ କମ୍ପିତ ଆତଙ୍କିତ ହେଉଛନ୍ତି ଚଢ଼େଇ ଚଢ଼େଇଆଣି ସେମାନଙ୍କର ମନରକଥା ବୁଝି ପାରିଲେ । ଚଢ଼େଇ କହିଲା ଚଢ଼େଇଆଣିକୁ ତୁ ଏଇଠାରେ ବସାଜଗି ବସିଥା । ମୁଁ ଯାଉଛି ପଲ୍ଲୀଗାଁରୁ ଗ୍ରୋଟ ନିଆଁ ଖଣ୍ଡେ ଧରିଆସି ଶୁ.।. ଜଙ୍ଗଲରେ ପକାଇଦେଲେ ସୁଖିଲା ଗଛ ପତ୍ର ଲାଗି ନିଆଁ ଜଳିବ । ଅତିଥିମାନେ ଉଷ୍ଣତାପ ପାଇବେ । ଠିକ ଚଢ଼େଇର ଠିକ ଡ଼େଣାଟି ପଚିଛ ପୋଡ଼ିଯାଉ । ଅତିଥି ସେବାପାଇଁ ସେ ଉଡ଼ିଉଡ଼ିଗଲା । ଖଣ୍ଡେ ନିଆଁ ଅଙ୍ଗାର ଥଣ୍ଟରେ ଧରିଆଣି ଜଙ୍ଗଲ ଭିତରେ ଟକାଇଦେଲା । ନିଆଁ ଜଳିଲା । ଅନ୍ଧକାର ମଧ୍ୟ ଦୂରହେଲା । ଅତିଥି ମାନେ ଉଷ୍ଣତାପ ପାଇଲେ । କିନ୍ତୁ ଜନଶୂନ୍ୟ ଜଙ୍ଗଲ ଭିତରେ ଅତିଥି ମାନଙ୍କୁ ଖାଦ୍ୟଦେବ କିଏ ? ଚଢ଼େଇ ଚଢ଼େଇଆଣି ସେମାନଙ୍କର ପ୍ରାଣର ବ୍ୟଥା ବୁଝିବାକୁ ଡେରି ହୋଇନଥିଲା ଚଢ଼େଇ କହିଲା-ଚଢ଼େଇଆଣି ଆମେ ସବା କଣ ଜଙ୍ଗଲ ବୁଲି ଫଳ ମୂଳ ଖାଇଲୁ । ଶସ୍ୟକ୍ଷେତରୁ ଖାଦ୍ୟ ସବୁ ଖାଇଲୁ । ଶିଶୁ ଶାବକ ମାନଙ୍କୁ ଆଧାର ଗୁଞ୍ଜିଦେଲୁ ଅଥଚ ଆମର ଅତିଥି ମାନେ ? ଚଢ଼େଇ କହିଲା ଚଢ଼େଇଆଣି ତୁ ଥା ମୁଁ ଯାଉଛି ଏହି ନିଆଁରେ ଲମ୍ଫଦେବି । ପୋଡ଼ିଯିବି । ମାଂସହୋଇଯିବି ଅତିଥି ମାନେ ମୋତେ ଖାଇବେ ଚଢ଼େଇଆଣି କହିଲା । ସେକଥା କୁହନା । ତୁମେଥାଅ ପୁଣି ବିବାହ କରିବ । ଘରସଂସାର କରିବ । ମୁଁ ଯାଉଛି ସେଇ ନିଆଁରେ ଲମ୍ଫଦେବି । ଏକଥା କହୁ କହୁ ଚଢ଼େଇଆଣି ସେଇ ପ୍ରଜ୍ୱଳନ୍ତ ଅଗ୍ନି ଶିଖା ଭିତରକୁ ଲମ୍ଫଦେଲା । ଚଢ଼େଇଟି ମଧ୍ୟ ଗୃହୁ ଗୃହୁଁ ସେଇନିଆଁରେ ଡ଼ିଳିପଡ଼ିଲା । ତାଙ୍କର ଯେଉଁ ଦୁଇଟି ଶିଶୁ ଶାବକ ଗ୍ରୋଟଗ୍ରୋଟ ପକ୍ଷିପକ୍ଷିଣୀ ଦୁଇଟି ଥିଲେ ସେମାନେ ପରସ୍ପର କଥାବାର୍ତ୍ତା ହେଲେ । ଅତିଥି ତ ଗୃହଜଣ । ଜଣେ ସନ୍ୟାସୀ ଜଣେ ରାଜକୁମାରୀ

ଜଣେରାଜା ଆଉଜଣେ ମନ୍ତ୍ରୀ ବାପା ବୋଉ ଦଜଣଟତଗଲେ । ଆଜିମ ଦିଜଣ ବଂଚରହି ଲଭ କଣ ? ଯୁଗେ ଯୁଗେ ସେମାନେ ମଧ୍ୟ ଅତିଥି ସେବା ପାଇଁ ସେଇନିଆଁରେ ନିଜକୁ ପୂର୍ଣ୍ଣାହୁତି ଦେଲେ । ଗଳ୍ପଟି ଏଇଠାରେ ସରିଲା ।

ମହାଭାରତୀୟ ବେଳା ଭୂମିରେ ପ୍ରତ୍ୟେକ ପ୍ରତ୍ୟେକର କର୍ତ୍ତବ୍ୟ ପାଳନ କରିବାକୁ ଯେତିକି ଆଗଭର, ତ୍ୟାଗ ସ୍ୱୀକାର କରିବାକୁ ମଧ୍ୟ ସେତିକି ତତ୍ପର ସନ୍ୟାସୀ ତାଙ୍କ ଧର୍ମ ରକ୍ଷାକରି ରୂପସୀ ରାଜକୁମାରୀ ଓ ସମସ୍ତ ପ୍ରକାର ରାଜକୀୟ ଭୋଗବିଳାସକୁ ତୁଚ୍ଛ କରି ନିଜର ଆଶ୍ରମ ଆଡ଼କୁ ଫେରି ଆସିଛନ୍ତି ସେ ବଡ଼ । ରାଜକୁମାରୀଙ୍କର ବରଣୀୟ ସ୍ୱାମୀ ଯାହା ନୁଅନ୍ତୁନା କାହିଁକି ତାଙ୍କୁ ପାଇବାପାଇଁ ବଣଜଙ୍ଗଲର କଣ୍ଟକିତ ପଥ ଅତିକ୍ରାନ୍ତ କରି ଧାଇଁଆସିଛନ୍ତି । ସେ ବଡ଼ । ରାଜା, କନ୍ୟାର ପିତା ଦୁଶ୍ଚିନ୍ତ କନ୍ୟାର ନିରାପତ୍ତା ପାଇଁ ଯଥା ସ୍ଥାନରେ ଉପସ୍ଥିତହୋଇ ପାରିଛନ୍ତି ସେ ବଡ଼ । ମନ୍ତ୍ରୀ ମଧ୍ୟ ଯଥାସମୟରେ ରାଜାଙ୍କ ନିକଟରେ ଉପସ୍ଥିତ ହୋଇ ପାରିଛନ୍ତି ସେ ବଡ଼ । ଚଢେଇ ଚଢେଇଆଣି ଅତିଥି ସେବାପାଇଁ ଯେଉଁ ମହାନ ଅଦର୍ଶ ପ୍ରଦର୍ଶନ କରି ଜୀବନବଳୀ ଦେଇଛନ୍ତି ସେମାନେ ବଡ଼ । ତାଙ୍କର ଶିଶୁଶାବକ ମାନେମଧ୍ୟ କୌଣସିଥିରେ ଊଣା ନୁହଁନ୍ତି । ଅତିଥି ସେବାପାଇଁ ସେଇ ନିଆଁରେ ନିଜକୁ ପୂର୍ଣ୍ଣାହୁତି ଦେଇଛନ୍ତି ସେମାନେ ମଧ୍ୟ ବଡ଼ ମହାଭାରତୀୟ ଭାବନାରେ ସମସ୍ତେ ବଡ଼ ॥

---

ଆମର ଜନ୍ମଭୂମି ଭାରତ ବହୁ-ତ୍ୟାଗୀବଳୀର ଦେଶ । ଦାମୀକର୍ତ୍ତିର ଦେଶ ସେବା ତଥା ଅତିଥି ପରାୟଣ ଦେଶ ॥





## ଭାରତ ଯୁଦ୍ଧରେ

# ଭରଟିଆ ପକ୍ଷୀ

ଶ୍ରୀ ସୁରପ୍ରସାଦ ମହାପାତ୍ର

କୁରୁକ୍ଷେତ୍ର ମହାସମରର ପ୍ରଥମ ଦିବସ । କୌରବ ପକ୍ଷର ସେନାପତି ମହାରଥି ଭୀଷ୍ମ ଏବଂ ପାଣ୍ଡବ ପକ୍ଷର ସେନାପତି ବୀର ଶ୍ରେଷ୍ଠ ଦ୍ୱିଷ୍ଣିକୃଷ୍ଣ ଅର୍ଜୁନ । ଦୁର୍ଯ୍ୟୋଧନ ସମ୍ମୁଖରେ ଭୀଷ୍ମ, ଭୀଷ୍ମ ପ୍ରତିଜ୍ଞା କରିଛନ୍ତି ଯେ, ପ୍ରତ୍ୟେକ ଦିନ ଯୁଦ୍ଧରେ ସେ ପାଣ୍ଡବ ପକ୍ଷର ଦଶ ସହସ୍ର ରଥୀଙ୍କୁ ବଧ କରିବେ ଅର୍ଜୁନ ମଧ୍ୟ ସଚେତନ ଯେ, ସେ ନିଜ ପକ୍ଷରୁ ୧୦ ସହସ୍ର ରଥୀଙ୍କୁ ବଧ କରିବା ପାଇଁ ଭୀଷ୍ମଙ୍କୁ ଅବସର ଦେବେ ନାହିଁ । ଉଭୟଙ୍କ ମଧ୍ୟରେ ଅସ୍ତ୍ର ଏବଂ ପ୍ରତ୍ୟସ୍ତ୍ର ଚାଳନା ଏଭଳି ଭାବରେ ଚାଲିଛି ଯେ, କାହାରିକୁ ମୁହୂର୍ତ୍ତେ ମାତ୍ର ଅବସର ମିଳୁନାହିଁ । ଏତିକି ବେଳେ ଗୋଟିଏ ଅଦ୍ଭୁତ ଘଟଣା ଘଟିଗଲା । ମହାଭାରତ ଯୁଦ୍ଧ ଦେଖୁଥିଲା ଗୋଟିଏ ପକ୍ଷୀ ନାଁ ତାର ଚାରକ୍ଷୀ ! ଅର୍ଜୁନଙ୍କ ନନ୍ଦୀଘୋଷ ରଥ ଉପରେ ବସି ଭୀଷ୍ମାର୍ଜୁନଙ୍କ ଯୁଦ୍ଧ ଦେଖି ସେ ନିଜକୁ ଧନ୍ୟ ମନେ କରୁଥିଲା । କିନ୍ତୁ ବିଧିର କି ବିଡମ୍ବନା ଭୀଷ୍ମଙ୍କ ପ୍ରେରିତ ଗୋଟିଏ ବାଣ ପକ୍ଷୀଟିର ଗର୍ଭ ଭେଦକଲା । ଏବଂ ତା ଗର୍ଭରୁ ଚାରୋଟି ଡିମ୍ବ ଯୁଦ୍ଧ ଭୂମିରେ ନିପତିତ ହେଲେ । ପ୍ରାଣ ଗଲା ବେଳେ ପକ୍ଷୀଣୀଟି ଡାକିଲା—ହେ ଜଗନ୍ନାଥ ! ହେ ପାର୍ଥ ସାରଥୀ, ମୋର ପିଲାମାନଙ୍କୁ ଘଣ୍ଟ ଘୋଡ଼ାଇ ରଖ ।

ଏ ପକ୍ଷିଣୀଟି କିଏ ? ଏକାଦଶ ଅକ୍ଷୌହିଣୀ କୌରବ ସୈନ୍ୟ ଏବଂ ସପ୍ତ ଅକ୍ଷୌହିଣୀ ପାଣ୍ଡବ ସୈନ୍ୟଙ୍କ ମଧ୍ୟରେ ଡିମ୍ବ ଗୁଡ଼ିକର ଅବସ୍ଥା କଣ ହେଲ ? ଅସଂଖ୍ୟ ହସ୍ତୀ' ଅସଂଖ୍ୟ ଅଶ୍ୱ, ଅସଂଖ୍ୟ ରଥ, ଏବଂ ଅସଂଖ୍ୟ ଯୋଦ୍ଧା ପରସ୍ପର ମଧ୍ୟରେ ଭୟଙ୍କର ଯୁଦ୍ଧ କରୁଥିବା ବେଳେ ଯୁଦ୍ଧ ଭୂମିରେ ପଡ଼ି ଯାଇଥିବା ଗୁଡ଼ିକ ପକ୍ଷୀଡ଼ିମ୍ବର ଅବସ୍ଥା କଣ ହେଲ ? ପକ୍ଷିଣୀର ଅନ୍ତିମ କାଳୀନ ପ୍ରାର୍ଥନା ଜଗନ୍ନାଥ ଶୁଣିଲେ କି ?

ମହାଭାରତ ଯୁଦ୍ଧ ହୋଇଥିଲା ଦ୍ୱାପର ଯୁଗରେ । ଦ୍ୱାପର ପୂର୍ବରୁ ତ୍ରେତା ଏବଂ ତ୍ରେତା ପୂର୍ବରୁ ସତ୍ୟ । ସେହି ସତ୍ୟ ଯୁଗରେ ପଦ୍ମନାଭ ଦ୍ୱୀପର ଅଧିପତି ଥିଲେ ମହାରାଜା ଶୁକ୍ର ସେ ଅତ୍ୟନ୍ତ ସତ୍ୟନିଷ୍ଠ ଏବଂ ଧର୍ମ ପରାୟଣ ରାଜା ଥିଲେ । ତାଙ୍କର ରାଣୀ ପଦ୍ମାବତୀ ମଧ୍ୟ ମହାସତୀ ଏବଂ ପତିବ୍ରତା । ରାଜାଙ୍କର ସତ୍ୟ ନିଷ୍ଠା ଏବଂ ଧର୍ମନିଷ୍ଠା ଦେଖି ଦେବରାଜ ଇନ୍ଦ୍ର ଏବଂ ଧନପତି କୁବେର ପ୍ରମାଦ ଗଣିବାକୁ ଲାଗିଲେ । ଇନ୍ଦ୍ର ମନେ ମନେ ଚିନ୍ତାକଲେ, ମହାରାଜ ଶୁକ୍ର ହଜେ ନା ହଜେ ଇନ୍ଦ୍ରପଦ ନେବେ କୁବେର ମଧ୍ୟ ଆଶଙ୍କା କଲେ ମହାରାଜା ଶୁକ୍ର ନିଶ୍ଚିନ୍ତ ହଜେ ନା ହଜେ ଧନପତି ହେବେ । ରାଜାଙ୍କର ଧର୍ମ ନଷ୍ଟ କରିବା ପାଇଁ ଦୁଇଜଣଯାକ ଦରିଦ୍ର ବ୍ରାହ୍ମଣ ବେଶରେ ରାଜାଙ୍କ ନିକଟରେ ଉପସ୍ଥିତ ହେଲେ । ଦୁହିଙ୍କର ଜୀର୍ଣ୍ଣ ଶୀର୍ଣ୍ଣ ଶରୀର ଏବଂ ଛିନ୍ନବସ୍ତ୍ର ଦେଖି ରାଜା ଅତ୍ୟନ୍ତ ଦୁଃଖିତ ହୋଇ ମନେ ମନେ ଚିନ୍ତାକଲେ ମୋ ରାଜ୍ୟରେ ବି ବ୍ରାହ୍ମଣମାନେ ଏଭଳି ଦୁଃଖ କଷ୍ଟରେ ଜୀବନ ଯାପନ କରୁଛନ୍ତି । ସେମାନେ କିଛି ମାଗିବା ପୂର୍ବରୁ ରାଜାକହିଲେ, ଆପଣ ମାନଙ୍କର ଯାହା ଇଚ୍ଛା, ନିଃସଙ୍କୋଚରେ ମୋତେ ମାଗନ୍ତୁ । ଆପଣ ମାନଙ୍କର ସମସ୍ତ ଅଭିଷ୍ଟ ପୂର୍ଣ୍ଣ କରିବା ପାଇଁ ମୁଁ ଧର୍ମକୁ ସାକ୍ଷୀ ରଖି ଦିବାର ସତ୍ୟ କରୁଛି । ଛଦ୍ମବେଶୀ ବ୍ରାହ୍ମଣ ଦୁହେଁ ରାଜାଙ୍କୁ ଆଶୀର୍ବାଦ କରି କହିଲେ, "ମହାରାଜ ! ଆମେ ଦୁହେଁ ଅତ୍ୟନ୍ତ କ୍ଷୁଧାର୍ତ୍ତ । ଆମ୍ଭମାନଙ୍କୁ ଭୋଜନ ଦେଇ ତୃପ୍ତ କରି ପାରିବ ? ରାଜା ହସି ହସି କହିଲେ, ଏ ତ ଗୋଟାଏ ଅତି ସାମାନ୍ୟ କଥା । ଚର୍ବ୍ୟ,

ଗ୍ରେଷ୍ୟ, କେହ୍ୟ; ଯେପୁ ଯାହା ଆପଣ ଯେତେ ଦିନମାନେରେ ଟୃହାନ୍ତ ମୁଁ ମୁହୂର୍ତ୍ତକ ମଧ୍ୟରେ ଅପଣଙ୍କୁ ଯୋଗାଇ ଦେଇ ପାରିବ । କହନ୍ତୁ, ଆପଣ ମାନେ କଣ ଗୃହାନ୍ତି ? ବ୍ରାହ୍ମଣ ଦୃହେଁ ହସି ହସି କହିଲେ, ହେ ରାଜନ ନିରାମିଷ ଭୋଜନରେ ଆମେ ତୃପ୍ତି ଲଭ କରୁନାହିଁ । ଆମ୍ଭେମାନେ ମାଂସାଶୀ ଆମେଗ୍ଚହ୍ନି ମାଂସ । କିନ୍ତୁ କୌଣସି ଜନ୍ତୁର ମାଂସନୁହେଁ । ଆମର ଆବଶ୍ୟକ ନରମାଂସ । ମୃଦୁ ହାସ କରି ରାଜା କହିଲେ କିଛି ଚିନ୍ତା ନାହିଁ । ଅପଣମାନଙ୍କର ତୃପ୍ତି ପାଇଁ ମୁଁ ମୋର ଶରୀର ବିସର୍ଜନ କରିବି । ମୋର ମାଂସ ଭକ୍ଷଣ କରି ଆପଣମାନେ ତୃପ୍ତ ହୁଅନ୍ତୁ । 'ବ୍ରାହ୍ମଣ ଦୁହେଁ' କହିଲେ "ଆପଣଙ୍କ ଜରାଜୀର୍ଣ୍ଣ ଶରୀରର ମାଂସଭକ୍ଷଣ କରି ଆମେ କଣ ତୃପ୍ତି ଲଭ କରି ପାରିବୁ ? ଆମର ଦରକାର କୋମଳ ଶିଶୁର ନରମାଂସ । ଆମେମାନେ ଜାଣିବାକୁ ପାଇଛୁ ଯେ, ଆପଣ ୪ଟଗୋଟି ପୁତ୍ରର ଜନକ । ସେଇ ୪ପୁତ୍ରଙ୍କୁ ଆମ୍ଭକୁ ଦେଲେ ଆମେ ସେମାନଙ୍କୁ ଆମ ଗୃହକୁ ନେଇ ଭକ୍ଷଣ କରିବୁ । ମନ ମଧ୍ୟରେ ଆଦୌ ଦ୍ୱିଧା ନକରି ରାଜା ତାଙ୍କର ୪ପୁତ୍ରଙ୍କୁ ଡ଼କାଇ ଆଣି ବ୍ରାହ୍ମଣ ଦୁହିଁଙ୍କ ହସ୍ତରେ ସମର୍ପଣ କରିଦେଲେ ଏବଂ ପୁତ୍ରମାନଙ୍କୁ ନିର୍ଦ୍ଦେଶ ଦେଲେ ତୁମେମାନେ ଏଇ ଦୁଇ ବ୍ରାହ୍ମଣଙ୍କ ସହିତ ସେମାନଙ୍କ ଗୃହକୁ ଯାଅ" ।

ପିତାଙ୍କ ନିର୍ଦ୍ଦେଶ ମାନି ଗୃରିଭାଇ ବ୍ରାହ୍ମଣ ଦୁହିଁଙ୍କ ସାଙ୍ଗରେ ଗୃଲିଲେ । ବାଟରେ ଗଲବେଳେ ସେମାନେ ବ୍ରାହ୍ମଣ ଦୁହିଁଙ୍କ ଘରକୁ ଯିବାର କାରଣ ସେମାନଙ୍କୁ ଜିଜ୍ଞାସା କରିବାରୁ ବ୍ରାହ୍ମଣ ଦୁହେଁ କହିଲେ, ତୁମମାନଙ୍କର ପିତା ସତ୍ୟବଦ୍ଧ ହୋଇ ତୁମ୍ଭଙ୍କୁ ଆମ୍ଭ ଦୁହିଙ୍କୁ ସମର୍ପଣ କରିଛନ୍ତି । ଆମେ ତୁମମାନଙ୍କୁ ବଧ କରି ତୁମର ମାଂସ ଭକ୍ଷଣ କରିବୁ । ଏକଥା ଶୁଣିଲକ୍ଷଣି ଗୃରିଭାଇ ଅଗ୍ନିଶର୍ମା ହୋଇ ଉଠିଲେ । ସେମାନେ କହିଲେ, ଯେଉଁ ପିତାର ବଂଶ ରକ୍ଷା କରିବାକୁ ଇଚ୍ଛୁନାହିଁ, ଯେଉଁ ପିତା ପୁତ୍ରମାନଙ୍କର ଅମଙ୍ଗଳ ଚିନ୍ତା କରେ, ସେ ପିତାନୁହେଁ । ଆମ୍ଭେମାନେ ତାଙ୍କର ଆଜ୍ଞା ପାଳିବାକୁ ବାଧ ନୋହୁଁ । ତୁମେମାନେ ଫେରିଯାଇ ପିତାଙ୍କୁ କୁହ ସେ ଅନ୍ୟ ମାଂସ ଦେଇ

ଆପଣମାନଙ୍କୁ ତୃପ୍ତ କରନ୍ତୁ । ଆମ୍ଭେମାନେ ଏଭଳି ପିତାଙ୍କର ଆଜ୍ଞା ପାଳନ କରି କଦାପି ନିଜର ଶରୀର ବିସର୍ଜନ କରିବୁ ନାହିଁ । ଏଭଳି କଥାଶୁଣି ବ୍ରାହ୍ମଣ ଦୁହେଁ କୋପାବିଷ୍ଟ ହୋଇ ରାଜାଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ, "ହେ ରାଜନ୍ ! ତୁମର ପୁତ୍ରମାନେ ତୁମର ବୀର୍ଯ୍ୟରୁ ଜନ୍ମ ନୁହଁନ୍ତି । ସେମାନେ ତୁମର ଅବୈଧ ସନ୍ତାନ । ତୁମରସ୍ତ୍ରୀ କୁଳଟା । ତୁମର ପୁତ୍ରମାନେ ତୁମର ଆଜ୍ଞା ଲଂଘନ କରିଛନ୍ତି । ସେମାନେ ଯଦି ପ୍ରକୃତରେ ତୁମର ପୁତ୍ର ହୋଇ ଥାନ୍ତେ, ତାହେଲେ ଏକଥା ଘଟି ନଥାନ୍ତା" ।

ଏହା ଶୁଣି ରାଜା କ୍ରୋଧରେ ଜର୍ଜରିତ ହୋଇ ନିଜର ସ୍ତ୍ରୀ ନିକଟକୁ ଯାଇଁ କହିଲେ, ତୁ ଅସତୀ, ତୁ କୁଳଟା । ତୋ ଗର୍ଭରୁ ଜନ୍ମିଥିବା ଏହି ଚାରିପୁତ୍ର ମୋର ପୁତ୍ର ନୁହଁନ୍ତି । ମୁଁ ଅଭିଶାପ ଦେଉଛି, ତୁ ମନୁଷ୍ୟ ନହୋଇ ଏହି ମୁହୂର୍ତ୍ତରେ ପକ୍ଷିଣୀ ହୋଇଯା ଏବଂ ଏ ଚାରିପୁତ୍ର ଯେଉଁମାନେ ମୋର ଆଜ୍ଞା ଲଂଘନ କରିଛନ୍ତି, ସେମାନେ ଚାରୋଟି ଡିମ୍ବ ହୋଇ ତୋର ଗର୍ଭରେ ଅବସ୍ଥାନ କରନ୍ତୁ । ଏକଥା ଶୁଣି ସତୀ ସ୍ତ୍ରୀ ରାଣୀ ପଦ୍ମାବତୀ ବିକଳ ହୋଇ କହିଲେ, ସ୍ୱାମିନ୍ ! ଆପଣ ବ୍ରାହ୍ମଣ ମାନଙ୍କର ଛଳକଥା ଜାଣିନପାରି ବିନା ଦୋଷରେ ମୋତେ ଏବଂ ମୋର ପୁତ୍ରମାନଙ୍କୁ ଅଭିଶାପ ଦେଲେ । ମୁଁ ଯୋଗ ବଳରେ ଜାଣିପାରୁଛି, ଇନ୍ଦ୍ର ଏବଂ କୁବେର ଛଦ୍ମବେଶୀ ବ୍ରାହ୍ମଣ ରୂପରେ ଆପଣଙ୍କ ଧର୍ମନଷ୍ଟ କରିବାକୁ ଆସିଥିଲେ । ତେବେ ଯାହା ହେଉ ଏ ଦୁରନ୍ତ ଅଭିଶାପ କିପରି ଖଣ୍ଡନ ହେବ ତାର ଉପାୟ କହନ୍ତୁ ।

ରାଣୀଙ୍କ କଥା ଶୁଣି ରାଜା ସମ୍ପୂର୍ଣ୍ଣ ଶାନ୍ତ ହୋଇଗଲେ ଏବଂ କହିଲେ ମୋର ଅଭିଶାପ କଦାପି ନିଷ୍ଫଳ ହେବନାହିଁ । ଦ୍ୱାପର ଶେଷରେ କୁରୁକ୍ଷେତ୍ର ମହାସମରରେ ତୁମେ ଚାରାକ୍ଷୀ ପକ୍ଷୀ ହୋଇ ନନ୍ଦୀଘୋଷ ରଥ ଉପରେ ବସି ଯୁଦ୍ଧ ଦେଖୁଥିବାବେଳେ ଖ୍ୟଷ୍ଣଙ୍କ ବାଣାଘାତରେ ଶରୀର ବିସର୍ଜନ କରିବ ଏବଂ ତୁମର ଗର୍ଭସ୍ଥିତ ସେଇ ଚାରୋଟି ଡିମ୍ବ ଯୁଦ୍ଧଭୂମିରେ ପଡ଼ିଲା ବେଳେ ସେମାନଙ୍କ

ରକ୍ଷା କରିବାପାଇଁ ତୁମେ ପାର୍ଥ ସାରଥୀ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କରିବ । ଭଗବାନ ଶ୍ରୀକୃଷ୍ଣ ସେମାନଙ୍କୁ ନିଶ୍ଚୟ ରକ୍ଷା କରିବେ ।
ଭୀଷ୍ମଙ୍କ ବାଣରେ ତରିର୍ଷା ପ୍ରାଣ ବିସର୍ଜନ କରିବା ବେଳେ ତାର ଡିମ୍ବ ଗୃହେିଙ୍କୁ ରକ୍ଷା କରିବା ପାଇଁ ଜଗନ୍ନାଥଙ୍କ ନିକଟରେ କାତର ପ୍ରାର୍ଥନା କରିଥିଲି । ଜଗନ୍ନାଥଙ୍କ ନିକଟରେ କାତର ପ୍ରାର୍ଥନା ବ୍ୟର୍ଥ ହୁଏନା । ଡିମ୍ବ ଗଡ଼ିକ ତଳେ ପଡ଼ିବା ସଙ୍ଗେ ସଙ୍ଗେ ଅର୍ଜ୍ଜୁନଙ୍କ ବାଣରେ ସାମନ୍ତକ ଦେଶର ରାଜାଙ୍କର ଶ୍ରେନ୍ଦ୍ରମକର ନାମକ ଗୋଟିଏ ପ୍ରକାଣ୍ଡ ହସ୍ତୀ ପ୍ରାଣ ବିସର୍ଜନ କଲା ତାର ପ୍ରକାଣ୍ଡ ଘଣ୍ଟି ଡିମ୍ବ ଗୁଡ଼ିକୁ ଆବୋରି ପଡ଼ିଗଲା । ଡିମ୍ବ ଗଡ଼ିକ ସୁରକ୍ଷିତ ହୋଇ ହସ୍ତୀର ପ୍ରକାଣ୍ଡ ଘଣ୍ଟାତଳେ ରହିଗଲେ । ଘଣ୍ଟା ଉପରେ ହସ୍ତୀ ଏବଂ ହସ୍ତୀ ଉପରେ ମହା ମହା ରଥୀମାନେ ପ୍ରାଣ ବିସର୍ଜନ କରି ପଡିଗଲେ । ଡିମ୍ବ ଗଡ଼ିକ ଅକ୍ଷତ ଅବସ୍ଥାରେ ନିର୍ବିଘ୍ନରେ ଘଣ୍ଟାତଳେ ରହି ୨ ଦିନ ପରେ ଫୁଟି ଯିବାରୁ ସେଥିରୁ ୪ ଗୋଟି ପକ୍ଷୀ ବାହାରି ଭାରତଯୁଦ୍ଧ ଦେଖି ନିଜର ଜୀବନ ସାର୍ଥକ କରିଥିଲେ । ସେହି ପକ୍ଷୀମାନଙ୍କର ନାମ ହୋଇଥିଲା, 'ଭରତଆ ପକ୍ଷୀ' ଭରତ ଯୁଦ୍ଧ ଦେଖିବାରୁ ଯେଉଁ ମାନଂକର ନାମ 'ଭରତଆ' ହୋଇଥିଲା ଭରତ ବଂଶଜ ଅର୍ଜ୍ଜୁନଂକର ସଖାଂକ କୃପାରେ ସେମାନେ ଜୀବନ ଲଭ କରିଥିଲେ ।

ଶୂଦ୍ରମୁନି ଶାରଳା ଦାସଂକ କୃତ ମହାଭାରତର ଅଷ୍ଟାଦଶପର୍ବ ମଧ୍ୟରୁ ଭୀଷ୍ମ ପର୍ବର ଏହା ଗୋଟିଏ ମନୋରମ ଏବଂ ଅନବଦ୍ୟ ଆଖ୍ୟାୟିକା ଗଜ ମୂର୍ଖ ସିଦ୍ଧେଶ୍ୱର ଜଗଜ୍ଜନନୀ ଶାରଳାଂକ କୃପା ଲଭ କରି ମହାଭାରତ ଚଣ୍ଡୀ ପୁରାଣ, ବିଲଙ୍କା ରାମାୟଣ ପ୍ରଭୃତି ବହୁ ଗ୍ରନ୍ଥ ରଚନା କରି ଯାଇ ଛନ୍ତି । ତାଂକର ପ୍ରତ୍ୟେକ କାବ୍ୟ ଅସଂଖ୍ୟ ଶିକ୍ଷଣୀୟ ଗଳ୍ପର ସମାହାର । ବ୍ୟାସଦେବଂକ କୃତ ମହାଭାରତ ଅପେକ୍ଷା ଶାରଳା ଦାସଂକ କୃତ ମହାଭାରତ ଯେ ଅତ୍ୟନ୍ତ ଜନମନ ରଞ୍ଜନ କାରୀ ଏହା ଅନସ୍ୱୀକାର୍ଯ୍ୟ ।

—ଓଁ ତତ୍ସତ୍—

# ଭଗବାନ୍ ଓ ସଇତାନ

**ବୈଷ୍ଣବ ଚରଣ ପଣ୍ଡା**
ସାରଳା ମନ୍ଦିର

ମହାକାଳର କରାଳ ବକ୍ଷରେ ଅର୍ବୁଦ ଅର୍ବୁଦ ଛତିଶ ମାସ ବର୍ଷ ଜନ ପ୍ରାଣୀ ଲୀନ ହୋଇ ଯାଉ ଥିଲେ ମଧ୍ୟ ଓଡ଼ିଆ ଜାତିର ମାନସ ପଟରୁ ସାରଳାଦାସ, ସାରଳା ମହାଭାରତ, ସାରୋଳ ଗ୍ରାମ କେବେ ହେଲେ ଲିଭିଯିବାର ନୁହେଁ··· ··· •••।     ×     ×     ×

ସେଦିନ ଥିଲା ରୌଦ୍ରୋଜ୍ଜ୍ୱଳ ବୈଶାଖର ଏକ ହସିଲା ଅପରାହ୍ଣ ବଣ ଭୂଇଁ ଚିରି ବହି ଚାଲି ଥିଲା ଯମୁନା ନଈ। ଖରସ୍ରୋତା ଯମୁନା ସ୍ୱଚ୍ଛତୋୟା ଯମୁନା ଚପଳ ଛଇଳ ଛନ୍ଦରେ ତୀର ଭୂଇଁକୁ ସୌନ୍ଦର୍ଯ୍ୟ ମଣ୍ଡି କରି ବହି ଚାଲି ଥିଲା। ନଦୀରେ ପାର ହେଉଥିଲା ଏକ ନୌକା। ଆରୋହୀ ଦୁଇଜଣ। ଜଣେ ଯାତ୍ରୀ, ଜଣେ ଚାଳକ। ଯାତ୍ରୀ ଜଣେ ସନ୍ନ୍ୟାସୀ ଋଷି। ତେଜୋଦୃପ୍ତ କଳେବର। ତରୁଣ ନହେଲେ ବି ଋଷିଙ୍କ ଦେହରେ ଚାଲିଥିଲା ତାରୁଣ୍ୟର ମହୋତ୍ସବ। ଆଜାନୁଲମ୍ବିତ ବାହୁ। ପ୍ରଶସ୍ତ ବକ୍ଷ ଦୀର୍ଘ କପାଳ। ଉନ୍ନତ ନାସିକା। ଶାଣିତ ବ୍ୟକ୍ତିତ୍ୱ। ନମ୍ର ଗାମ୍ଭୀର୍ଯ୍ୟର ମଧୁର ଅଭିବ୍ୟକ୍ତି ବ୍ରହ୍ମର୍ଷି ପରାଶର। ସେଥିଲେ-ନୌକାର ଯାତ୍ରୀ ଆଉ ଚାଳକ ? ନାଁ ଚାଳକ ନୁହେଁ ଚାଳିକା। ସେ ଗୋଟିଏ ବାଳକ। ନାଁ ନାଁ ବାଳିକା ନୁହେଁ ତରୁଣୀ। ଅସାମାନ୍ୟା ରୂପସୀ। ଅଙ୍ଗେ ଅଙ୍ଗେ ଲାବଣ୍ୟର ସମାରୋହ। ଅପରାହ୍ଣ-ଆଲୋକରେ ଦାଉ ଦାଉ ଝଟକୁ ଥିଲା ତାର ଯୌବନୋଚ୍ଛଳେ ତନୁବଲ୍ଲରୀ। ସେ ଥିଲା ନୌକାର ଚାଳିକା।

ଦୃଢ଼ ମୁଷ୍ଟିରେ ଆବୃତ୍ତ ଲମାରୁଥିଲା ଧୀବର ରାଜକନ୍ୟା ଯୋଜନ ଗନ୍ଧା ଓ ନିଷ୍ଚଳ ଭାବରେ ନୌକାରେ ବସିରହିଥିଲେ ଋଷି ପରାଶର ।

ଆପରାହ୍ନ ସୂର୍ଯ୍ୟକିରଣ ସ୍ବଚ୍ଛ ଯମୁନା-ଜଳରେ ରଙ୍ଗବୋଳୁଥିଲା । ଆକାଶରେ ନୀଳିମାର ପୂର୍ଣ୍ଣ ପ୍ରଶାନ୍ତ । ପବନରେ ମିଶିଥିଲା ବଣ ମାଳତୀ ଓ ଶାଳ ଫୁଲର ମହୁଆ ବାସ୍ନା । ଦୂରରୁ ଶୁଭୁଥିଲା ବଣ୍ୟ କପୋତର, ସାଥି ହରା କପୋତୀର ଅଶାନ୍ତ କୂଜନ । ସ୍ବପ୍ନଲୋକରେ ଭାସିଚାଲିଥିଲା ନୌକାଟି । ନୌକା ମଝିରେ ମଦାଳସାଯୋଜନ ଗନ୍ଧା । ଶ୍ରମ କମ୍ପିତ ଶରୀର । ଘନଘନଶ୍ବାସ । ବକ୍ଷ ଯୁଗଳ ଆନ୍ଦୋଳିତ । ଲୋଭନୀୟ କୋପଳରେ ବିନ୍ଦୁ ବିନ୍ଦୁ ଝାଳ । ପବନରେ ବସନ ସ୍ଥାନଚ୍ୟୁତ । କେଶ ଆଲୁଳାୟିତ । ମାଂସଳ ସୁ-ଗଠିତ ସ୍ତନ । ଯୌବନର ଲୋଲହାନ ଆମନ୍ତ୍ରଣ ।

ଋଷି ହେଲେ ଅନ୍ୟମନସ୍କ । ଋଷିଙ୍କ ଉଦ୍ଦୀପ୍ତ ଚାହାଣିରେ ଲାଳସାର ଅରୁଣିମା କ୍ରମେ ଋଷି ହେଲେ ବିଚଳିତ । ଋଷିଙ୍କ ମନ ଆଉ ନୟନ ଏକାନ୍ତ ଭାବରେ ଯୋଜନ ଗନ୍ଧାର ଅନାବୃତ୍ତ ସୌନ୍ଦର୍ଯ୍ୟରେ ହଜି ହଜି ଗଲା, ଭିଜି ଭିଜି ଗଲା । ନୌକା ହେଲା ମନ୍ଥର । ପବନର ବେଗରୁ ଅଥବା ଚଞ୍ଚଳ ମନର ଆବେଗରୁ ମଝିନଈରେ ନୌକାହେଲା ମନ୍ଥର । ଋଷିହେଲେ ପାଗଳ । ତା ପରେ-? ବନ୍ଧ ଟଳିଲା । ଜଳ ଉଛୁଳିଲା । ଅଖଣ୍ଡ-ଖଣ୍ଡହେଲା । ଭଗବାନ୍ ସଇତାନ୍ ହେଲେ । ଋଷି ମାତାଲ୍ ପରି ଆଗେଇ ଚାଲିଲେ ଯୋଜନ ଗନ୍ଧା ଆଡ଼େ । ଆଉ ଯୋଜନ ଗନ୍ଧା- ? ଭୟରେ, ଲଜ୍ଜାରେ, ଅନନୁଭୂତ ଭାବାବେଶରେ ମୂହ୍ୟମାନା ଯୋଜନ ଗନ୍ଧା ନଦୀ ଗର୍ଭରେ ଲମ୍ଫପ୍ରଦାନ କଲା । ପରେ ପରେ ଋଷି ପରାଶର ମଧ୍ୟ ଲମ୍ଫ ପ୍ରଦାନ କଲେ ନଦୀ ଗର୍ଭରେ । ନଦୀରୁ ଉଦ୍ଧାର କରି ବିବସନା ଯୋଜନାଗନ୍ଧାକୁ ନୌକାକୁ ଆଣିଲେ ଋଷି ପରାଶର । ନିଜର କମଣ୍ଡଳୁରୁ ସଞ୍ଜୀବନୀଜଳ ବା ଜୀବନାମୃତ ପିଇବାକୁ ଦେଲେ ବାଳିକାକୁ । ସଞ୍ଜୀବନୀ

ସୁଧା; ଯାହାକୁ ପିଇଲେ ଭ୍ରାନ୍ତ, ଶ୍ରାନ୍ତ, କ୍ଳାନ୍ତ ଦୁସ୍ମୃତି ଦୂର ହୁଏ ଓ ଏକ ଅଲୌକିକ ଉଲ୍ଲାସ ବୋଧ ଦେହ ମନରେ ଜାଗ୍ରତ ହୁଏ । ତା ପରେ-? ପୂର୍ଣ୍ଣ ଜ୍ୱଳନା ଋଷି ପରାଶର ଓ ଧୀବର ରାଜକନ୍ୟା ଯୋଜନ ଗନ୍ଧା ।

କୋଳେ ଧରିଣ ମୁନି ଜାନୁରେ ବସାଇଲେ
ମଦନ ଆରମ୍ଭେ ମୁନି ମୁଖେ ଚୁମ୍ବ ଦେଲେ ।
କାମ ଅସାଷ୍ଟମେ ମୁନି ରମଣ କଲେ ବାଞ୍ଛା
ବଦନ୍ତ ମହାଋଷି ଅନ୍ତର ତୋତେ ଇଚ୍ଛା ।
ଧର୍ମ ଗୁପ୍ତ କନ୍ୟାକୁ କୋଳେ ଧଇଲେ ବ୍ରହ୍ମଋଷି
ଯୋଜନ ଗନ୍ଧାର ଭୁଲେ ଶୃଙ୍ଗାର ରସେ ପଶି ।
ବିଶେଷେ ମହାତମା ଇତି ଶାସ୍ତ୍ରେ ଜିତା ।
ଅନେକ ରସେ ଶୃଙ୍ଗାର ସହିଲ୍ ବନିତା ।

ପୂର୍ଣ୍ଣ ଜ୍ୱଳନ । ଏହି ଜ୍ୱଳନରୁ, ଏହି ମିଳନରୁ, ଏହି ସଇତାନ-ସଂଘର୍ଷରୁ-ସୃଷ୍ଟି ହେଲା ଆଟ୍‌ମିକ୍ ଏନର୍ଜି । କୁଆଁ-କୁଆଁ-କୁଆଁ-ନମୋଃସ୍ତୁତେ ବ୍ୟାସ ବିଶାଳ ବୁଦ୍ଧେ । ଭଗବାନ୍ ବ୍ୟାସ ଜନ୍ମ ହେଲେ ନୌକାରେ । ଭଗବାନ୍ ସୈତାନ ହେଲେ ଅଥବା ସୈତାନରୁ ଭଗବାନ୍ ଜାତହେଲେ ।



# କଣ୍ଟାଗଡ ଯୁଦ୍ଧ ଓ ମୁଣ୍ଡଟେଙ୍ଗା କରଗଛ

**ଶ୍ରୀ ଦେବସ୍ନାନ ଦାସ**-କଣ୍ଟାପଡ଼ା
ସଭାପତି-**ଆଦ୍ୟାଶକ୍ତି ସାହିତ୍ୟ ସଂସଦ**

ସମଗ୍ର ଓଡ଼ିଶାରେ ବହୁ ଐତିହାସିକ ଘଟଣା ରହିଛି । ମାତ୍ର ତାହା ଉପଯୁକ୍ତ ଗବେଷଣା ଓ ଆଲୋଚନା ଅଭାବରୁ, କାଳର କରାଳସ୍ରୋତରେ ବିଲୀନ ହେବାକୁ ବସିଲାଣି । ଏହିପରି ଏକ ଐତିହାସିକ ଘଟଣା ହେଉଛି "କଣ୍ଟାଗଡ଼ ଯୁଦ୍ଧ ଓ ଷଣ୍ଢ ନୃପତି ଶାରଳା ଦର୍ଶନ । କେଉଁ ଆବାହମାନ କାଳରୁ ଝଙ୍କଡ ସମଗ୍ର ଓଡ଼ିଶାର ପ୍ରାଚୀନ ଶକ୍ତିପୀଠ ଓ ସାରସ୍ୱତ ପୀଠ ରୂପେ ପରିଚିତ । ଏହି ପୁରାଣ ପ୍ରସିଦ୍ଧ ଝଙ୍କଡ଼ର ସାରୋଳ ଗ୍ରାମରେ ଆଦିକବି ସାରଳାଦାସଙ୍କ ଜନ୍ମସ୍ଥାନ ରୂପେ ପରିଚିତ । ସାରୋଳ ଗ୍ରାମ ନିକଟରେ କଣ୍ଟାଗଡ଼ ଅବସ୍ଥିତ । ଅତୀତର କଣ୍ଟାଗଡ଼ ବର୍ତ୍ତମାନର ଝଙ୍କଡ ପ୍ରଗଣାକୁ ବୁଝାଯାଉଥିଲା ଷୋଡ଼ଶ ଶତାବ୍ଦୀର ମଧ୍ୟଭାଗରେ, ପୂର୍ବ ଗଜପତିଙ୍କର ଏକ ସମ୍ପର୍କୀୟ ଜନ୍ମେଜୟ ହରିଚନ୍ଦନ ସାମନ୍ତରାୟ ନାମକ ରାଜା-କଣ୍ଟାଗଡ଼ ରାଜ୍ୟ ଶାସନ କରୁଥିଲେ । ସାରଳା ଠାକୁରାଣୀଙ୍କର ଅପାର ମହିମା ଓ ଅମିତ ପ୍ରଭାବରୁ ରାଜା ଓ ପ୍ରଜାମାନେ ଶାକ୍ତ ଧର୍ମାବଲମ୍ବୀ ଥିଲେ । ତେଣୁ ଇତିହାସର ବହୁପତ୍ନୀ ବିବାହ ପ୍ରଥାକୁ ଶାକ୍ତ ଜନ୍ମେଜୟ ରାଜା ଉପେକ୍ଷା କରି ଥିଲେ । ରାଣୀଙ୍କର ନାମ ଥିଲା ସୁମିତ୍ରା । ରାଜପୁତ୍ର ହୃଷୀକେଶ ଓ ରାଜ କନ୍ୟା ଉର୍ମିଳା ରୂପ, ଗୁଣ ଓ ଚାରିତ୍ରରେ ପରିପୂର୍ଣ୍ଣ ଥିଲେ । ରାଜକୁମାରୀ ଉର୍ମିଳାଙ୍କର ବୟସ ବଢିବା ସଙ୍ଗେ ସଙ୍ଗେ ଅପରୂପ ସୌନ୍ଦର୍ଯ୍ୟ ବୃଦ୍ଧି ପାଇବାକୁ ଲାଗିଲା । ଦେଶ ବିଦେଶରୁ ରାଜକୁମାରୀ ଉର୍ମିଳା ବିବାହ ନିମନ୍ତେ ବହୁ ପ୍ରସ୍ତାବମାନ ଆସିଲା । ମାତ୍ର ରାଜକନ୍ୟାଙ୍କ

ନିମନ୍ତେ କେହି ଉପଯୁକ୍ତବୋଲି ବିବେଚିତ ହେଉନଥିଲେ । କାରଣ ଉର୍ମିଳା ଥିଲେ ସ୍ୱର୍ଗର ଅପସରା ରମ୍ଭା ମେନକାଙ୍କ ଠାରୁ ଅଧିକ ରୂପ ଗୁଣବତୀ ଏକଦା ରାଜକୁମାରୀ ସଖୀମାନଙ୍କ ସହିତ ରାଜଉଦ୍ୟାନ ମଧୁବନରେ ସନ୍ଧ୍ୟାଭ୍ରମଣ କରୁଥିଲେ । ସେହି ସମୟରେ ମଧୁବନ ନିକଟସ୍ଥ ଚନ୍ଦ୍ରଭାଗାନଦୀର ଶାଖା ମନ୍ଦାର ମାଳା ନଦୀରେ ନୌଯାତ୍ରା କରୁଥିଲେ ପ୍ରବଳ ପ୍ରତାପୀ ପାରଦ୍ୱୀପ ଗଡ଼ର ଷଣ୍ଢରାଜା । ଏହି ନୌଯାତ୍ରା ସମୟରେ ଷଣ୍ଢରାଜାଙ୍କର ଦୃଷ୍ଟି ପଥାରୁଢ ହୋଇଥିଲେ ରାଜକନ୍ୟା ଉର୍ମିଳା । ରାଜକନ୍ୟାଙ୍କର ରୂପ ସୌନ୍ଦର୍ଯ୍ୟ ସ୍ପର୍ଶ କରିଥିଲା ଷଣ୍ଢରାଜାଙ୍କର କଠୋର ହୃଦୟକୁ । ନିଜ ରାଜ୍ୟକୁ ଫେରିଗଲେ ମଧ୍ୟ ଉର୍ମିଳାର ସ୍ମୃତି ମାନସ ପଟ୍ଟରୁ ଲିଭିଯାଇ ପାରିଲା ନାହିଁ । ସେ ଦୂତ ହସ୍ତରେ ପତ୍ର ପ୍ରେରଣ କଲେ କଣ୍ଠାଗଡ଼ ରାଜାଙ୍କ ନିକଟକୁ । ସ୍ୱଇଚ୍ଛାରେ ନହେଲେ ମଧ୍ୟ ବଳ ପ୍ରୟୋଗ କରି ସେ ଉର୍ମିଳାଙ୍କୁ ପତ୍ନୀରୂପେ ଲାଭ କରିବାକୁ ଗୃହୀତ ବୋଲି ପତ୍ରରେ ଉଲ୍ଲେଖ ଥିଲା ଏକ ପକ୍ଷରେ ଷଣ୍ଢରାଜାଙ୍କର ଆକ୍ରମଣ ଅନ୍ୟ ପକ୍ଷରେ ସୁକୁମାରୀ ରାଜପୁତ୍ରୀର ଅନିଚ୍ଛା ଏ ଦୁଇଟି କଥା କଣ୍ଠାଗଡ଼ ରାଜାଙ୍କୁ ବିଚଳିତ କରିଥିଲା ରାଜ ପୁତ୍ର ହୃଷୀକେଶ ଆଦରଣୀୟା ଭଉଣୀକୁ ଧୀବରରାଜ ଷଣ୍ଢଙ୍କ ହାତରେ ଟେକିନଦେବାକୁ ଜିଦ୍‌ଧରି ବସିଲେ ଓ ଦୂତ ହାତରୁ ପତ୍ରଖଣ୍ଡିକ ନେଇ ଖଣ୍ଡ ଖଣ୍ଡ ଚିରଦେଇ ପାଦତଳେ ଦଳି ପକାଇଲେ ।

ଏଣେ ଷଣ୍ଢରାଜାଙ୍କ ବିବାହ ନିମନ୍ତେ ନଗରରେ ସମସ୍ତ ଆୟୋଜନ ଚାଲିଛି । ଏହି ସମୟରେ ଦୂତ ଫେରିଆସି ସମସ୍ତ କଥା କହିଗଲା । ଏହାଶୁଣି ଷଣ୍ଢରାଜା କ୍ଷୁବ୍ଧ ହୋଇ କଣ୍ଠାଗଡ଼ ରାଜାଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣାକଲେ ଯୁଦ୍ଧକଥା ଶୁଣି ଧର୍ମାବତାର କଣ୍ଠାଗଡ଼ରାଜା ମୁଣ୍ଡରେ ହାତଦେଇ ବସିଲେ ମାତ୍ର ଇଷ୍ଟ ସ୍ମରଣକରି ଯୁଦ୍ଧ ଭୂମିରେ ଛିଡାହେଲେ । ପ୍ରଥମ ଦିନ ଯୁଦ୍ଧରେ ଷଣ୍ଢସେନାଙ୍କର ଅପୂର୍ବ ରଣକୌଶଳୀ ଅତି ସହଜରେ କଣ୍ଠାଗଡ଼ ସୈନ

ମାନଙ୍କୁ ପରାସ୍ତ କରିଥିଲା । ଯୁଦ୍ଧର ବିରତି ପରେ କଣ୍ଠାଗଡ଼ ରାଜା ରାଜବାଟିକୁ ଫେରିଆସି ସର୍ବ ଶକ୍ତି ମୟୀ ମା ସାରଳାଙ୍କର ଶରଣାପନ୍ନ ହେଲେ । ଠାକୁରାଣୀ ସେହିଦିନ ରାତିରେ ଶେଷପ୍ରହରରେ ସ୍ୱପ୍ନରେ ଆସି ଆବିର୍ଭୂତ ହେଲେ । କହିଲେ ରାଜନ୍ ମୁଁ ତୁମର ଦୃଢଭକ୍ତିରେ ପରିତୃପ୍ତ ପାଇଲି ସତ । ମାତ୍ର ତୁମେ ମୋ ନିକଟରେ ଲୁଚି ଶୋଇଲେ ପ୍ରଜାଗଣଙ୍କ ସମେତ ରାଜ୍ୟଧ୍ୱଂସ ପାଇଯିବ । ତୁମେ କର୍ତ୍ତବ୍ୟରେ ବେଳାଭୂମି ଯୁଦ୍ଧ କ୍ଷେତ୍ରକୁ ଅବତୀର୍ଣ୍ଣ ହୁଅ । ମୁଁ ତୁମର ପାଶେପାଶେ ରହିବି । ହେ ରାଜନ ମୁଁ ତୁମକୁ ଅଭୟଦାନ କରୁଛି । ତୁମେ ଏଯୁଦ୍ଧରେ ବିଜୟୀ ହେବ । ରାଜାଙ୍କର ନିଦ ଭାଙ୍ଗିଗଲା ମନ୍ଦିରରୁ ଭାସିଆସୁଥାଏ । ଘଣ୍ଟ ଘଣ୍ଟା ଓ ଶୁଭ ଶଙ୍ଖର ନାଦ । ନିନ୍ଦେଜେପୁ ନିଜ ଶରୀରରେ ଅପୂର୍ବ ଶକ୍ତି ସଂଚାର ହେଉଥିବା ଅନୁଭବ କରୁଥିଲେ । କାଳ ବିଳମ୍ବ ନକରି ଦ୍ୱିତୀୟ ଦିନ ଯୁଦ୍ଧରେ ଅବତୀର୍ଣ୍ଣ ହେଲେ । ଯୁଦ୍ଧଭେରୀ ବାଜିଉଠିଲା ତୋପ ଫୁଟିଲା । ଉଭୟପକ୍ଷୀୟ ସୈନ୍ୟ ଯୁଦ୍ଧ କ୍ଷେତ୍ରରେ ମିଳିତହେଲେ । ଏତିକି ବେଳେ ଆକାଶ ମଣ୍ଡଳ ଖଣ୍ଡଖଣ୍ଡ କଳା ମେଘ ମାଳାରେ ଆଚ୍ଛାଦିତ ହେଲା । ଗୁଡ଼ୁଂ ଗୁଡ଼ୁଂ ଘନ ଅନ୍ଧକାର ଭିତରେ ବିଜୁଳିର ଚମକ ଓ ଘଡ଼ଘଡ଼ିର ପ୍ରକମ୍ପରେ ପୃଥିବୀ ପ୍ରକମ୍ପିତ ହେଲା । କଳାଶାଢ଼ୀ ପରି ବେଷ୍ଟିତା ହହହହ ହାସିନୀ ସିନ୍ଦୁର ପରି ମଣ୍ଡିତା ଆପାଦଲମ୍ବିତ ମୁକ୍ତକେଶୀ ଯୋଗିନୀ ଗଣ କଳକଳା ନାଦକରି ଲହଲହ ଜିହ୍ୱା ଦେଖାଇ ରଣଭୂମିରେ ନୃତ୍ୟ କରିବାକୁ ଲାଗିଲେ ଓ ପନିକା ଧାରରେ ଖଣ୍ଡ ସୈନିକ ମାନଙ୍କର ଶିର ଛେଦନ କରି ଯୁଦ୍ଧ କ୍ଷେତ୍ରସ୍ଥିତ ଏକ ବଟବୃକ୍ଷର ଶାଖା ପ୍ରଶାଖାରେ ଝୁଲାଇ ଦେଲେ । ଛତ୍ରଭଙ୍ଗ ହୋଇ ସୈନ୍ୟଗଣ ପଳାୟନ କଲେ । ଯୁଦ୍ଧରେ ଭୟାନକ ବାତ୍ୟାବର୍ଷିକା ମଧ୍ୟରେ ଦେବୀର ଶକ୍ତି ଅତୁଳ ପ୍ରଭାବ ଖଣ୍ଡରାଜା ଲକ୍ଷ୍ୟ କରୁଥିଲେ ଓ ମା ସାରଳାଙ୍କର ଏକ ନଭସ୍ପୃଷ୍ଟି ଗୁହ୍ୟାମୂର୍ତ୍ତି ଦର୍ଶନ କଲେ । ପରଜୟର ଗ୍ଲାନି ଓ ଲୋହିତ ବର୍ଣ୍ଣ ମନ୍ଦାର ମାଳ ନନ୍ଦି

ଷଣ୍ଢ ରାଜାଙ୍କ ହୃଦୟରେ ପରିବର୍ତ୍ତନ ଆସିଲା । ଦେବୀଙ୍କର କ୍ରୂର ଦୃଷ୍ଟିରୁ ନିଜ ରାଜ୍ୟକୁ ରକ୍ଷା କରିବା ପାଇଁ ସମ୍ମୁଖରେ ଦଣ୍ଡାୟମାନ ହୋଇ ଷଣ୍ଢ ରାଜା ଉହମା ବୋଲି କହି ଚେତନାଶୂନ୍ୟ ହୋଇ ଢଳିପଡ଼ିଲେ । କିଛିକ୍ଷଣପରେ ଜଣେ ବୈଷ୍ଣବ ସାଧକଙ୍କର ମୃଦୁକର ସ୍ପର୍ଶରେ ସେ ଚେତନା ଫେରି ପାଇଲେ । ତାଙ୍କର ପରାମର୍ଶରେ ଷଣ୍ଢରାଜା କଣ୍ଟାଗଡ଼ ରାଜାଙ୍କ ସହିତ ସନ୍ଧି ସ୍ଥାପନ କରିଥିଲେ । ପରିଶେଷରେ ମା ସାରଳାଙ୍କର କୃପାଲାଭ ନିମନ୍ତେ ସାରଳା ମନ୍ଦିରକୁ ବହୁ ଭୂସମ୍ପତ୍ତି ଦାନ କରି ମନ୍ଦିରର ନିତି ଖଞ୍ଜାର ବ୍ୟବସ୍ଥା କରିଥିଲେ । ଷଣ୍ଢରାଜା ଉହମା କହିଥିବା ସ୍ଥାନକୁ ବର୍ତ୍ତମାନ ଉହାମା ନାମରେ ନାମିତ । ତେରମାଣପୁର ଠାରେ ଅଦ୍ୟାପି ଜଣେ ସାଧକ ମନ୍ତ୍ରପୂତ ଜଳଦ୍ୱାରା ଅସାଧ୍ୟ ସାଧନ ହୋଇ ପାରେ ବୋଲି କେତେକ ଲୋକ ମୁଖରେ ପ୍ରଚାରିତ ହୁଏ । କଣ୍ଟାପଡ଼ା ଗାଁର ମଧ୍ୟ ଭାଗରେ ଜନ୍ମେଜୟ ହରି ଚନ୍ଦନ ରାଜାଙ୍କର ଭଗ୍ନରାଜବାଟି ଦେଖାଯାଏ ଓ ଗାଁର ଶେଷମୁଣ୍ଡରେ ସେତେବେଳର ଯୁଦ୍ଧଭୂମିର ମଧ୍ୟଭାଗରେ ଗୋଟିଏ ବରଗଛକୁ ଲୋକେ ମୁଣ୍ଡଟେଙ୍ଗା ବରଗଛବୋଲି କହୁଥାଆନ୍ତି

କ୍ରମଶଃ

(ଲୋକପ୍ରବାଦ ଓ କେତେକ ଐତିହାସିକ ସତ୍ୟଘଟଣା ବର୍ଣ୍ଣିତ)





# ମୁଁ କିଏ ?

**ବାବୁ ମହାରଣା**- ଭଂଜନଗର-ଗଞ୍ଜାମ

"ଯଦି ଜୀବନଟା ଗୋଟିଏ ଖେଳ, ଆମେ ତାକୁ ଖେଳିବୁ
ଯଦି ଜୀବନଟା ଗୋଟିଏ ବିପଦ, ଆମେତାହାକୁ ଅତିକ୍ରମକରି ଆସିବୁ
ଯଦି ଜୀବନଟା ମୃତ୍ୟୁ ହୁଏ ଆମେ ତାରି ସମ୍ମୁଖୀନ ହେବା ଉଚିତ"

ଆମର ଏହି ବିରାଟ ସୃଷ୍ଟିରେ ମୃତ୍ୟୁହିଁ ଚିରନ୍ତନ ସତ୍ୟ । ଭଗବାନଙ୍କ ସୃଷ୍ଟିରେ ପ୍ରତି ମୂହୁର୍ତ୍ତରେ କେତେ ଯେ ଜନ୍ମ ହେଉଛନ୍ତି ଓ କେତେ ମୃତ୍ୟୁର ଆଶ୍ରୟ ନେଉଛନ୍ତି, ତାହାର ଇୟତ୍ତା ନାହିଁ । କିନ୍ତୁ ଏହି ଜନ୍ମ ଓ ମୃତ୍ୟୁ ସମ୍ପର୍କରେ ପ୍ରଶ୍ନ ଉଠେ-ଜନ୍ମ କାହିଁକି ହୁଏ ଓ ମୃତ୍ୟୁ କାହିଁକି ହୁଏ ? ମୃତ୍ୟୁହିଁ କ'ଣ ଜୀବନର ଶେଷ ପରିଣତି ?

ପ୍ରତ୍ୟେକ ମନୁଷ୍ୟ ମୃତ୍ୟୁର ଅର୍ଦ୍ଧାନସ୍ଥ ହେଲ ପରେ ତା'ର ଶରୀର ଜଡ଼ବତ ପଡ଼ିରହେ । ମୃତ ଶରୀରକୁ କେହି ପୋତାପାଡ଼ ଦିଏତ, କେହି ଅବା ଅଗ୍ନିଶିଖାରେ ପୋଡି ପାଉଁଶ ହୋଇଯାଏ । ପରମୂହୁର୍ତ୍ତରେ ଲୋକେ କହନ୍ତି ବାପାଚାଲିଗଲେ, ମା ଚାଲିଗଲେ, ପୁଅଟିକୁ ହରେଇବସିଲି । ଝିଅଟି ମରିଗଲା । ଯେଉଁ ପୁତ୍ରସନ୍ତାନ କେତେଘଣ୍ଟାପୂର୍ବରୁ ସମସ୍ତ ସ୍ନେହ ମମତାର ଉତ୍ସରୂପେ ଜନନୀର କୋଳମଣ୍ଡନ କରୁଥିଲା । ଯେଉଁ ଶରୀରର ସେବା ଯତ୍ନରେ ମାତାର କେତେ ବିନିଦ୍ରରଜନୀ ବିତି ଯାଉଥିଲା । ଯେଉଁ ଶରୀର ନାନା ପ୍ରକାର ପୋଷାକ ଓ ବହୁମୂଲ୍ୟ ଅଳଙ୍କାରାଦି ଆବରଣ ଯୁକ୍ତ ହୋଇ ଶୋଭାପାଉଥିଲା ସେହି ଶରୀର ଠିକ୍ ସେହିପରି ଅଛି ଅଥଚ ତାହାପାଇଁ ଏତେ ମର୍ମଭେଦୀ ଆର୍ତ୍ତନାଦ କାହିଁକି ? ସେବା ଅସ୍ପର୍ଶ କାହିଁକି ? ପୁଣି ଚର୍ମ ମାଂସ ଶରୀର ନିକଟରେ କ୍ରନ୍ଦନର ସୁଅ ଛୁଟିଛି କାହିଁକି ?

ଯେଉଁ ଶରୀର କିଛିକ୍ଷଣ ପୂର୍ବେ ମୁଁ ମୋର ବୋଲି କହୁଥିଲି ସେହି ଶରୀରଟି ଅବିକଳ ସେହିପରି ରହିଛି, କିନ୍ତୁ ସେ ତା'ର ପାଟିରେ 'ମୁଁ' 'ମୋର' 'ମୋତେ' ବୋଲି କହୁନାହିଁ କାହିଁକି ? କିନ୍ତୁ ପୂର୍ବେ ଯେ ଜୀବନ୍ତ ଶରୀର ଧାରଣ କରିଥିଲା, ତାର ପଦକ୍ଷେପରେ "ମୁଁ" ଅର୍ଥାତ ଏବଂ "ମୋର" ଅର୍ଥାତ ସ୍ୱାର୍ଥପରତା ନିବିଡ଼ଭାବେ ଜଡ଼ିତ ହୋଇ ରହିଥିଲା । "ମୁଁ" 'ମୋର' ଯେ କହୁଥିଲା । ସେ ଗଲା କୁଆଡେ ? ତାହାହେଲେ ପ୍ରଶ୍ନ ଉଠେ—ଏ ଶରୀର କଣ "ମୁଁ" ନୁହେଁ ? ତେବେ ମୁଁ କିଏ ?

"ମୁଁ" ତାହାହେଲେ ଆଉଜଣେ କେହି, ଯାହା ସତ୍ତାରେ ଏ ଶରୀର ଗତିଶୀଳ ଓ ଯାହାର ଅନୁପସ୍ଥିତିରେ ଏହି ଶରୀର ଜଡ଼ । ତେବେ ଏହି ଦେହ, ମନ, ଓ ପ୍ରାଣ ସମସ୍ତଙ୍କଠାରୁ "ମୁଁ" ସ୍ୱତନ୍ତ୍ର । ମୋର ଦେହ, ମୋର ମନ, ମୋର ପ୍ରାଣ, କିନ୍ତୁ ମୁଁ ଦେହ, ମୁଁ ମନ କିମ୍ବା ମୁଁ ପ୍ରାଣ ନୁହେଁ । ମୁଁ ଏହି ଦେହ, ମନ, ପ୍ରାଣଦେଇ ଅଭିନ୍ନ ଭାବରେ ପର ପ୍ରକାଶ ଉଦାହରଣ ସ୍ୱରୂପ ଯେଉଁ ଗୃହରେ ମୁଁ ବାସକରେ ସେ ମୋର ଆବାସଭୂମି । ମୋତେ ଯିଏ ଜନ୍ମ ଦେଇଛି ସେହିହେଲା ମୋର ଜନନୀ । ସେହିପରି ଏହି ଦେହଟି ମୋର ଆବାସଭୂମି ଏବଂ ମୁଁ ତାର ଜନ୍ମଦାତା ଅନ୍ୟ ଏକ ବସ୍ତୁ । ଗୃହ ଖଣ୍ଡିକ ଭାଙ୍ଗିଗଲେ ମୁଁ ଯେପରି ଦୁଃଖୀ ଏବଂ ଭଲରେ ରହିଲେ ମୁଁ ସେପରି ସୁଖୀ । ଏ ଦେହ ମନ ପ୍ରାଣରେ ଦୁଃଖ ସୁଖରେ, "ମୁଁ" ସେହି ପରି ସୁଖ ଦୁଃଖ ଅନୁଭବ କରେ । ମାତ୍ର ଗୃହଠାରୁ ଯେପରି "ମୁଁ" ସମ୍ପୂର୍ଣ୍ଣ ପୃଥକ୍ ତଦ୍ରୂପ "ମୁଁ" ର ଏ ଦେହ, ମନ, ପ୍ରାଣ, ସହିତ କିଛି ସମ୍ପର୍କ ନାହିଁ । ଏହି ସତ୍ତାର କୌଣସି ସୁଖ ନାହିଁକି ଦୁଃଖନାହିଁ ସେହି ସତ୍ତା ସୁଖ ଦୁଃଖ ଶୂନ୍ୟ, ସତତ ସତ୍ତାହିଁ "ମୁଁ" ।

"ମୁଁ" ଏହାର ସ୍ୱରୂପ ବିଷୟରେ ଜାଣିବାକୁ ଗଲେ ଓ ଚିନ୍ତାକଲେ, ଚିନ୍ତାସେହି ବିଷୟରେ କୂଳ କିନାର ପାଏ ନାହିଁ । ଏହା ଅଚିନ୍ତ୍ୟ, ଅବ୍ୟକ୍ତ ଓ ଇନ୍ଦ୍ରିୟର ଅଗମ୍ୟତାକୁ ଭେଦକରିହେବନାହିଁ କଥାଦ୍ୱାରା କହିହେବନାହିଁ ଚିନ୍ତାଦ୍ୱାରା ବୁଝିହେବନାହିଁ, ଚକ୍ଷୁ, କର୍ଣ୍ଣ, ଚର୍ମଆଦି ଇନ୍ଦ୍ରିୟ ମାନଙ୍କ ଦ୍ୱାରା ଅନୁଭବ କରିହେବ ନାହିଁ । ମାତ୍ର ମୁଁ ଯେ ଅଛି ତାର ଅସ୍ତିତ୍ୱ ସବୁବେଳେ ଉପଲବ୍ଧ ହୁଏ । ଏହି ଯେଉଁ ସ୍ୱତନ୍ତ୍ର ସତ୍ତା 'ମୁଁ' କୁ ଶାସ୍ତ୍ରକାର ମାନେ "ଆତ୍ମା" ବୋଲି କହିଥାନ୍ତି । ଆତ୍ମା ସର୍ବବ୍ୟାପି, ସୃଷ୍ଟି କର୍ତ୍ତା ରକ୍ଷଣ, ପାଳନକର୍ତ୍ତା ଓ ଧ୍ୱଂସ କର୍ତ୍ତା । ଏହି ଅନନ୍ତ, ଅସୀମ, ଚିରନ୍ତନ, ନିତ୍ୟ, ସନାତନ କଥାକୁ ଏତେ କ୍ଷଣିକ ଭିତରେ ଆଲୋଚନା କରାଯାଇ ନପାରେ···

ପରିଶେଷରେ ଏତିକି ଅନୁରୋଧ ପ୍ରତ୍ୟେକ ମାନବ "ମୁଁ" ଅର୍ଥାତ ଅହଂଭାବ ଏବଂ "ମୋର" ଅର୍ଥାତ ସ୍ୱାର୍ଥପରତାକୁ ତ୍ୟାଗକରି ଅବିନାଶୀ ଶ୍ରୀମଦ୍ ଭଗବତ୍ ଗୀତାର ବାଣୀକୁ ସ୍ମରଣକରି, "ଫଳ ପ୍ରତି ଆଶା ଶୂନ୍ୟ ହୋଇ ନିଜର କର୍ତ୍ତବ୍ୟ ଓ କର୍ମପଥରେ ଅଗ୍ରସର ହୋଇ ନିଜର ଜୀବନକୁ ସାର୍ଥକ କରିବା ଉଚିତ **ପଣ୍ଡିତ ଗୋପବନ୍ଧୁ** କହିଥିଲେ—

ମାନବ ଜୀବନ ନୁହଇ କେବଳ ବର୍ଷ, ମାସ, ଦିନ ଦଣ୍ଡ,
କମେ ନୁହଁ ନର କର୍ମ ଏକା ତା'ର ଜୀବନର ମାନଦଣ୍ଡ ।



# କୋକୁଆ ଭୟ

ଶ୍ରୀ ନବ କିଶୋର ଦାସ
ଏମ୍. ଏ ଡି. ଇଡି.

ଶାରଳା ପୌରାଣିକ ମହାକାବ୍ୟ ମହାଭାରତ ମହାସତୀ, ମହାନାରୀ ଗାନ୍ଧାରୀ ଓ ମହାଯତି ଋଷି ଅଷ୍ଟାବକ୍ରଙ୍କ ଯୁଗ୍ମ ଅଭିଶାପର ଫଳଶ୍ରୁତି ସ୍ୱରୂପ ସ୍ୱକୁଟୁମ୍ବ ସହିତ ସମଗ୍ର ଯାଦବ ବଂଶ ଯେ ନିଶ୍ଚିତ ଧ୍ୱଂସର ଏକ ଅତଳ ଗହ୍ୱରରେ ପଡ଼ିବାକୁ ଯାଉଛି, ନିଜସ୍ୱ ଅପୂର୍ବ ପ୍ରତିଭା, ମନୀଷା ଓ ପ୍ରଜ୍ଞାବଳରେ ମହାକବି ଶାରଳାଦାସ ତାଙ୍କର ସ୍ୱଭାବ ସୁଲଭ ଭଂଗୀରେ ସେଇ ଧ୍ୱଂସର ଚିତ୍ର ଆଂକିଛନ୍ତି ଦ୍ୱାରକାରେ କୋକୁଆ ଭୟର ମନୋଜ୍ଞ କାହାଣୀରେ ।

ମହାଭାରତର କୁରୁ ପାଣ୍ଡବ ଯୁଦ୍ଧର ସର୍ବ ନିୟନ୍ତା ହେଉଛନ୍ତି ଶ୍ରୀକୃଷ୍ଣ, ଯେ କି ଶାରଳାଙ୍କ ଲେଖନୀରେ ଜଗନ୍ନାଥ । ତାଙ୍କ ହାତର ସର୍ବଧ୍ୱଂସୀ ଅସ୍ତ୍ର ଚକ୍ର ଯୋଗୁ ସମସ୍ତେ ଭୟଭୀତ ହୋଇ ଉଠିଛନ୍ତି । କିନ୍ତୁ ବିସ୍ମୟର କଥା ସତୀ ଓ ଯତିଙ୍କର ବ୍ରହ୍ମ ଅଭିଶାପରେ ନିଜକୁ ବହୁ ଅପକର୍ମ ଯୋଗୁ ସ୍ୱୟଂ କୃଷ୍ଣ ଅବସମ୍ଭାବି ପରିଣତି ପାଇଁ ଆତଂକିତ ହୋଇଛନ୍ତି ।

ଭୟ ଜର୍ଜରିତ ମନରେ ଏଇ ପୃଷ୍ଠପଟରେ ମାନସିକତାର ଏଇ ପରିପେକ୍ଷୀରେ ଶାରଳାଙ୍କ କ୍ରାନ୍ତିକାରୀ ଲେଖନୀରେ କୋକୁଆ ଆମ ସମ୍ମୁଖରେ ଠିଆ ହୋଇଛି- ଠିଆହୋଇଛି ଦ୍ୱାରକା ଭୁବନର ଆକାଶ ଓ ମାଟିରେ ।

**କୋକୁଆ ଜନ୍ମର କଥା—**

ମର୍ତ୍ତ୍ୟଲୀଳାର ଅନ୍ତିମ ଅଧ୍ୟାୟ । ସଂସାର ଛାଡ଼ି କପରି ଧରାଧାମରୁ ବିଦାୟ ନେବେ ଏଥିଲାଗି ଶ୍ରୀକୃଷ୍ଣ ମନରେ ଘୋର ଉଦ୍‌ବେଗ । ମର୍ତ୍ତ୍ୟପୁରୀ ଛାଡ଼ିବା ପୂର୍ବରୁ କି ଉପାୟ କଲେ ନିଜବଂଶକୁ କି ଉପାୟରେ ବିନାଶ କରିବେ ତାଙ୍କର ସାରଲେଣି ପଡ଼ିଲା ନିଜ ଅର୍ଜିଲା ଜିନିଷକୁ କପରି ନଷ୍ଟକରିବେ ? ବଡ଼ ଦୁରାପଦ ବେଳ ଆସିଲା ଏମିତି ଭାବୁ ଭାବୁ ତାଙ୍କୁ ଗୋଟାଏ ଉପାୟ ଦିଶିଲା ମନକୁ ଆସିଛି ଏକ ଚମତ୍କାର କଳ୍ପନା ଦ୍ୱାରକା ଭୁବନରେ କୋକୁଆଭୟ ଦେଖାଇ ଧ୍ୱଂସ ପୂର୍ବରୁ ଯାଦବ ମାନଙ୍କ ମନରେ ଆତଙ୍କ ସୃଷ୍ଟି କରିବା । କୃଷ୍ଣଙ୍କ କଳ୍ପନାରୁ ହଠାତ୍ ଜନ୍ମନେଲା କୋକୁଆ । ଦ୍ୱାରକାଭୁବନ ସାରା କୋକୁଆଭୟ ବ୍ୟାପିଗଲା । ଅଇଲା କୋକୁଆ ଘରଆଡ଼େ ଶୁଭିଲା-ଅଇଲା କୋକୁଆ-ଏକଥାଶୁଣି ଦ୍ୱାରକା ଲୋକଯାକ ଅଥୟଭୂଆ ହେଲେ ଭୟରେ କଅଁଳା ପିଲାମାନେ ମାଆଙ୍କ କୋଡ଼ରେ ଲୁଚିଲେ । ଘର କୋଣରେ ଝିଏସୁଆଡ଼େ ଛପିଗଲେ । ମା ଦେବକୀ କୋକୁଆ ଭୟରେ ଗ୍ଲାନିଆ ହୋଇ ଧାଇଁଲେ କୃଷ୍ଣଙ୍କ ପାଖକୁ । ପୁଅ ବାସୁଦେବଙ୍କୁ ପଚାରିଛନ୍ତି କୋକୁଆ ବୋଲି କେମିତିଆ ଜୀବ । ମାଆଙ୍କ ମନରେ ଭୟକୁ ଆହୁରି ବଢ଼େଇ ଦେଇ ଗମ୍ଭୀରଭାବରେ ସେ କହୁଛନ୍ତି କୋକୁଆ କଥା ସତ-ସେଜୀବ ଅପାର କାଳରୁ ଅଛି ବୋଲି ସେ ଶୁଣିଛନ୍ତି । ଗୃହଯୁଗଯାକ ସେ ସ୍ୱର୍ଗପୁରରେ ଥିଲା । କେବଳ ତାଙ୍କ ଡରରେ ଦ୍ୱାରକା ପୁରକୁ ଆସୁନଥିଲା । ଏବେ ସଂସାରରେ କଳିଯୁଗ ପ୍ରବେଶ କଲାଣି । ତେଣୁ କୋକୁଆ ସ୍ୱର୍ଗ ଛାଡ଼ି ଦ୍ୱାରକା ଆସିଛି ।

କୋକୁଆ ବୋଲି ଯେଉଁ ଜୀବ ତାର ରୂପ ଦେଖିବାକୁ କେମିତି ? ଭୟରେ ଶିହରି ଉଠୁଥିବା ମା ଦେବକୀଙ୍କୁ ଶ୍ରୀକୃଷ୍ଣ

କୋକୁଆର ଭୟଙ୍କର ରୂପ-ଯାହାସେ ନଜେ ସୃଷ୍ଟି କରିଛନ୍ତି । ତାକୁ ବନେଇ ଚୁନେଇ କହୁଛନ୍ତି । ଏବେ ଦେଖନ୍ତୁ ସେଇ କାଳରୂପୀ କାଳ ଚଣ୍ଡ କୋକୁଆକୁ ତାର ଭୁଜ ଦୁଇଟି ଲମ୍ବି ଯାଇଛୁ ଯୋଜନ ଯୋଜନ ତାର ସାତ ଗୋଟି ଆଖି । ଗୋଟାଏ ଅଦ୍ଭୁତ ପକ୍ଷୀପରି ତାର ଅଛୁ ନଅଟି ଡେଣା ସେଇଡେଣା ଝାଡ ସେ ଅନ୍ତରୀଖରେ ଉଡୁଥାଏ ଯୋଜନକ ଯୋଜନକୁ ଲମ୍ବିଛୁ ତାର ଶୁଣ୍ଢ । ତାର ବକଟାଳ ଶବ୍ଦରେ ତ୍ରିଭୁବନ କମ୍ପୁଛି ପଞ୍ଚଯୋଜନ ତାର ଗର୍ଭ ଖାଙ୍କର ଉଦର । ବାଟଘାଟରେ ସ୍ତ୍ରୀ ପୁରୁଷ ଯାହାକୁ ଯେଉଁଠି ପାଉଛୁ ସବୁ ଭକ୍ଷଣ କରୁଛୁ ।

ଶ୍ରୀକୃଷ୍ଣ ମୁହଁରୁ କୋକୁଆ କଥା ଶୁଣି ଦ୍ୱାରକା ସାରା ଭୟରେ କାନ୍ଦଉଠିଲ ସବୁଆଡେ ଲାଗିଲ ମହାଭୟ । ଦିନ ବେଳା କୋକୁଆ ସପନ ଦେଖିଲେ । ଆଖିକୁ କାହାରି ନିଦ ଆସିଲନାହିଁ ଭୟରେ ଶୁଆଁଇ ରହିଲେ । କିଏ କହିଲ ତାକୁ କୋକୁଆ ଗିଳିଥିଲ ଆଉ କାହାକୁ କୋକୁଆଧରି ଉଡିଗଲ ଆକାଶକୁ । ଘରେଘରେ କହ:ଟ ପଡ଼ିଗଲ । ସମସ୍ତେ ମନସ୍ଥିରକଲେ ଦ୍ୱାରକା ଛାଡ଼ି ପଳାଇବାକୁ । ଏଠି ଆଉ ଅମରଭି ଲୋଡ଼ାନାହିଁ । ମରଣକୁ ବରଣ କରିବାକୁ ଇଚ୍ଛାକଲେ । କିନ୍ତୁ ବୁଦ୍ଧି ଦିଶିଲ ନାହିଁ ସବୁଆଡେତ କୋକୁଆଭୟ ଯିବାକୁ କେଣିକି ବାଟନାହିଁ । ସମସ୍ତ ଯାଦବ ଯାଇ କୃଷ୍ଣଙ୍କୁ କୁଆଡ଼େ ପଳାଇଯିବାକୁ ଧରିଲେ କୋକୁଆ ଦାଉରୁ ସେ କାହାକୁ ରକ୍ଷା କରିପାରିବେ ନାହିଁ ବୋଲି ସଫା ମନାକରିଦେଲେ । ହତାସ ଓ ନିରାଶରେ ବୁଡି ରହିଲେ ମରଣ ସୁନିଶ୍ଚିତ ।

## ଅମାବାସ୍ୟାର କାଳରାତି—

ହତାସ ଓ ନିରାଶାର ଅନ୍ଧାରରେ ବୁଡ଼ିରହି ମୃତ୍ୟୁକୁ ଅପେକ୍ଷା କରିଥିବା ବେଳେ ଘନେଇ ଆସିଛି କାର୍ତ୍ତିକମାସ କୃଷ୍ଣପକ୍ଷର ଅମାବାସ୍ୟା

ଗଲ୍ପ । ସେଦିନ ପୁଣି ତୁଳ ସଂକ୍ରାନ୍ତି । ସଂକ୍ରାନ୍ତି ଅମାବାସ୍ୟା ସବୁ ଅଶୁଭ ସୂଚନା । ସାରଳାଦାସଙ୍କ ଲେଖନୀରେ ଏଠି ଡ଼ଁଆସ ଅନ୍ଧାର ମରଣକୁ ମୂର୍ତ୍ତିକରି ତୋଳିଛି । ଚମତ୍କାର ମନସ୍ତାତ୍ତ୍ୱିକ ପରିବେଶ ମୃତ୍ୟୁ ଓ ଅନ୍ଧକାର ଏଠି ଏକାକାର ଓ ଅଭିନ୍ନ କୃଷ୍ଣଙ୍କ ମାତ୍ରାର କାଳରୂପୀ କୋକୁଆ ମୂର୍ତ୍ତି କୃତାନ୍ତକର ପ୍ରଣ୍ଣକରୂପେ ଅନ୍ଧ-କାରକୁ ଭୟଙ୍କରକରି ତୋଳିଛି । ସେଇ ଅମାବାସ୍ୟା ସଂକ୍ରାନ୍ତି ରାତିରେ ଗୋଳଥିବା ବେଳେ ଅଦ୍ଭୁତ ଭାବରେ ଅଚାନକ ଦେଖିଲେ କୋକୁଆର ମୂର୍ତ୍ତି । ବଳଣରେ ଉଠିପଡ଼ି ଗୁଜନଅରେ ଯାଦବମାନେ ଚିତ୍କାର କରି ଉଠିଲେ-ହେଇଗଲା କୋକୁଆ-ମାରମାର, ଧରଧର ଗୋପାଳମାନେ ଲଉଡ଼ି ବୁଲାଇ କୋକୁଆ ପଛରେ ଧାଇଁଲେ ଅସମ୍ଭବ ପଟିତୁଣ୍ଡି-ରେ ରେକାର ଶବ୍ଦରେ ଦ୍ୱାରକା ହୁଲୁସ୍ଥୁଲ । କୋକୁଆକୁ ମାର ମାର କହି ଲଉଡ଼ି ଧରି ଗୁଡିପିଡ଼ି ହୋଇ ଗୋଡ଼େଇଗଲେ କୋକୁଆକୁ ଗୋଡ଼େଇ ଗୋଡ଼େଇ ଗଲେ ଯମୁନାନଦୀ କୂଳଯାଏ । ଗଉଡ଼ମାନଙ୍କ ସାଙ୍ଗରେ କୃଷ୍ଣବଳରାମ ବି ଧାଇଁଥାନ୍ତି । ସମସ୍ତେ ଧଇଁସଇଁ ହୋଇ ଯାଇ ଶେଷରେ ପହଞ୍ଚିଲେ କାଳନ୍ଦୀହ୍ରଦ ତୀରରେ ଥିବା କଦମ୍ବ ଗଛମୂଳେ ଯାଦବ ମାନଙ୍କ ଭିତରେ ଉତ୍ତେଜନା ବଢିଗଲାଛି । କଦମ୍ବବୃକ୍ଷତଳେ ଏକାଠି ହୋଇ ବାଜ ଘୋଷ, ଦାଉଣ୍ଡି, କଡ଼ା, ମର୍ଦ୍ଦଳ ବଜାଇ ମତ୍ତଭୋଳରେ ମତ୍ତା ରସରେ ମାତି ସମସ୍ତେ ନାଚଛନ୍ତି ଖେମଟା ନାଚ । ଅମବାସ୍ୟା ଅନ୍ଧାରରେ ଏ ବାଦ୍ୟ ଓ ନୃତ୍ୟ କି ଭୟଙ୍କର କୋକୁଆ ଯେପରି ନଗ୍ନଉଚ୍ଚ ମୃତ୍ୟୁର ତାଣ୍ଡବ ନୃତ୍ୟ ! ମତ୍ତଭୋଳହୋଇ ଲଉଡ଼ି ବୁଲାଇ ସେମାନେ ନିଜ ନିଜ ଭିତରେ ପିଟାପିଟି ହେଲେ । ଅନ୍ଧାରର ଉତ୍ତେଜନା ଭିତରେ ସାରଳାଙ୍କ ଲେଖନୀ ଖୋଜି ପାଇଛି କୃଷ୍ଣବଂଶର କଳଙ୍କ ଶାମ୍ବଙ୍କୁ । ଭାଗ୍ୟର ନିଷ୍ଠୁର ବିଡ଼ମ୍ବନା କାଳରି ଇଂଗିତରେ ଯେଉଁଶାମ୍ବ ଅଷ୍ଟାବକ୍ର ଋଷିଙ୍କଦ୍ୱାରା ଯଦୁବଂଶ ଧ୍ୱଂସର ଆଦିପର୍ବରେ ଥିଲେ

ସେଇ ଶାମ୍ବ ଧ୍ୱଂସର ଚୂଡ଼ାନ୍ତରେ ମଦମତ୍ତ ରୂପରେ ଉଭା ! କାଳ-ବକ୍ଷରେ ସାରଳାଙ୍କ ଶାଣିତ ବଦ୍ରୂପ ଏବେ ବ ଉଜ୍ଜୀର୍ଣ୍ଣ ଜ୍ୱଳନ୍ତର ଉରେ କ୍ରୋଳୁଆକୁ ମାରନ ଡାରବାରୁ କ୍ରୋଧରେ ଉନ୍ମତ ହୋଇ ଶାମ୍ବ ସାତ୍ୟକଙ୍କୁ ଲକ୍ଷ୍ୟକର ଖୁବ୍ ଯୋରରେ ଫୋପାଡ଼ନ୍ତ ଲଉଡ଼ ବାଡକୁ । ସାତ୍ୟକ କୌଶଳରେ ଆଡେଇ ହୋଇ ଯାଇଛୁ । ଶାମ୍ବଙ୍କ ଲଉଡ଼ ସାତ୍ୟକଙ୍କ ଠାରେ ନ ବାଜ ବାଜୁଛ କଦମ୍ବ ଗଛର ଗଣ୍ଡିରେ । ଲଉଡ଼ ଆଘାତରେ କଦମ୍ବ ଗଛରୁ ଧାର ଧାର ବହିପଡ଼ୁଛ ଧଳା ଧଳା ଫେଣ ପର କ୍ଷୀର । କଦମ୍ବ ବୃକ୍ଷରୁ ଝରପଡୁଛ କାଦମ୍ବରୀ ରସ । ଶାମ୍ବ ହିଁ ପ୍ରଥମେ କାଦମ୍ବରୀ କ୍ଷୀର ବହିବାର ଅପୂର୍ବ ଦୃଶ୍ୟ ଜଣାଇ ଥିଲେ ଶ୍ରୀକୃଷ୍ଣଙ୍କୁ ।

## କୃଷ୍ଣଙ୍କ କୈଶୋରର ସ୍ମୃତି ସ୍ମରଣ

ସାରଳାଦାସଙ୍କର ଅସାଧାରଣ ପ୍ରତିଭାର ଇଏ ଆଉ ଏକ ଅପୂର୍ବ କଂଞ୍ଜନା । ମରଣର ତୋରଣରେ ଏକ ହାସ୍ୟୋଜ୍ଜଳ ବଦ୍ରୂପର ଶିଖା ସେ ଜଳାଇଛନ୍ତ । କଦମ୍ବ ଗଛରୁ କ୍ଷୀର ବୋହିବା ଦେଖି କୃଷ୍ଣଙ୍କର କୈଶୋରର ମଧୁର ସ୍ମୃତି ଚେଇଁ ଉଠିଛୁ । ଅତୀତର ରୋମାଞ୍ଚ-ପୁଲକରେ ସେ ଶିହରି ଉଠଛନ୍ତ । ଏଇସେ କଦମ୍ବ ଗଛ ତଳେ- ଗୋପୀମାନଙ୍କ ସହିତ କେତେ ମଧୁଯାମିନୀର ରାସକ୍ରୀଡ଼ା- ବଂଶୀରେ ରାଧାର ନୃତ୍ୟ- ବସ୍ତ୍ରହରଣ ଡ଼ାଳେ ଡ଼ାଳେ ତାର ରୋମାଞ୍ଚ ଭର ରହିଛୁ- କାହିଁ ସେତେ ବେଳେ ଏଇ କଦମ୍ବଡ଼ାଳରୁ ଝୋପାଏ ହେଲେ କ୍ଷୀର ବୋହି ନାହିଁ- ଡ଼ାଳ ଭାଙ୍ଗିଲେ ବ ଏତେ ଟିକେ ରସ ଝରୁ ନଥିଲ । ଆଜ କାହିଁକ ଏତେ କ୍ଷୀର ଏଥିରୁ ବହିପଡ଼ୁଛି ? ଅତୀତର ରୋମାଞ୍ଚକର ମଧୁର ସ୍ମୃତି ଓ ବର୍ତ୍ତମାନର ଧ୍ୱଂସ ଓ ମୃତ୍ୟୁର ରୋମାଞ୍ଚ- ଏଇ ଦ୍ୱୈତ ଚିନ୍ତା ଚେତନାରେ ଶ୍ରୀକୃଷ୍ଣଙ୍କ ମନ ଅପୂର୍ବ ଉଲ୍ଲାସରେ ହୋଇ

ଉର୍ପିତ ଉଚ୍ଛଳ ଓ ଚଞ୍ଚଳ । ମାୟାଧରଙ୍କର ମାୟା ସମସ୍ତଙ୍କୁ ଆଚ୍ଛନ୍ନ କରିଛି ଅପୂର୍ବ ସମ୍ମୋହନରେ । ଜଦମ୍ବର କ୍ଷୀର ହୋଇଛି ଅମୃତ ହୁଁ ଅଧିକ ସୁସ୍ୱାଦୁ । ଯାଦବମାନେ ମନର ଉତ୍ସାହରେ ମନ ମୁତାବକ ଆକଣ୍ଠ ପାନ କରିଛନ୍ତି ସେଇ ମଧୁର ମହାରସ । ମତ୍ତରସରେ ମାତୁଆଲ ହୋଇ ବଳରାମଙ୍କ ସହ ଗୋପାଳ ମାନେ ଭୂଇଁରେ ପଡି ହୋଇଛନ୍ତି ଅସାଷ୍ଟମ, ଅଚେତ । ପୁଣି ଚେଇଁ ଉଠି କଉଡରେ ପିଟାପିଟି ହୋଇ କଦଂବ ଗଛକୁ ଡହ ମାରିଛନ୍ତି । ପୁଣୁ ସେଇ ମଧୁରସ ପାନରେ ମାତାଲ ।

## ସର୍ବ ନାଶର ମୂହୂର୍ତ୍ତ—

ମଦିର ମତ୍ତ ଯାଦବମାନଙ୍କର ସର୍ବନାଶର ଶେଷ ମୁହୂର୍ତ୍ତ ଉପନୀତ । ଧ୍ୱଂସର ଦାଢ଼ରେ ଛିଡ଼ା ହୋଇଥିବା ମଦ ଖେଳା ମାତୁଆଳୀ ଯାଦବ ମାନଙ୍କର କରୁଣ ପରିଣତି କୁ ରୂପାୟନ କରିବାରେ ସାରଳାଙ୍କ ଲେଖନୀ ଏଠି ନେଇଛି ନୂଆ ମୋଡ଼ । କୋଳୁଆ ଭସ୍ମ ଅନ୍ତର୍ହିତ କୋଳୁଆ ଭସ୍ମ ସ୍ଥାନରେ ମଦ୍ୟାସକ୍ତ ଯାଦବମାନଙ୍କ ମନରେ ମୃତ୍ୟୁର ନୂତନ ଉତ୍ତେଜନା ଭିନ୍ନ ଏକ ମାନସିକତା ଦୃଶ୍ୟପଟ ହୋଇଛି ଓଲଟ ପାଲଟ । ଭସ୍ମ ବଦଳରେ ଦେଖାଦେଇଛି ମତ୍ତଗର୍ବ, କୁରୁକ୍ଷେତ୍ର ବଳବର୍ଯ୍ୟର ଆସ୍ଫାଳନ; ଅବକ୍ଷୟର ସର୍ବାତ୍ମକ ଧ୍ୱଂସ ପାଇଁ ଚମତ୍କାର ପ୍ରବଣତା । ସାରଳା ଲେଖନୀରେ ଶାଶ୍ୱତ ଚିତ୍ର-କୁରୁକ୍ଷେତ୍ର ଧ୍ୱଂସର ତାର ମୂକ ସ୍ମୃତି ଦ୍ୱାରକାରେ ଅଭିନୀତ-ମରାମରି, ପିଟାପିଟି ହୋଇ ଅନ୍ଧକାରରେ କେହି କାହାକୁ ଚିହ୍ନି ନ ପାରି ଶେଷରେ ପହଞ୍ଚିଛନ୍ତି ଦ୍ୱାରକାର ପଶ୍ଚିମ ସମୁଦ୍ର ବେଳାଭୂମି ସନ୍ତରି ବଣ ଅରମା ଭିତରେ । ଶାଣିତ ଛୁରି ଭଳି ଦାନ୍ତୁଆ ସନ୍ତାରିଘାସ ଉପାଡି ସେମାନେ ମରାମରି ହୋଇ ଯାଦବମାନେ ଶେଷ ନିଦ୍ରାରେ ଢଳିପଡିଛନ୍ତି ସନ୍ତସନ୍ତିଆ ସନ୍ତରି ବଣରେ ସାରଳା ଲେଖନୀର ଚିରନ୍ତନୀବାଣୀ ଝରିପଡିଛି —

ଯେ ଯାହାକୁ ଯେତେକ ଅଛଇ ଭବିଷ୍ୟ
କେ ତାହା ଆନ କରିବାକ ଶେଷ ।

× × ×

ଯେବଣ ଶାପ୍ୟ ଦ୍ଧିଁ ଅଷ୍ଟାବକ୍ର ଋଷି ଦେଲେ ।

× × ×

ତହିଁବର ଭବିଷ୍ୟ ଦେଖି ମୋ ମହାପ୍ରାଣ
ସନ୍ତ୍ରା ବଳେ ନାଶଗଲେ ଯାଦବ ସକଳ ।

× × ×

କୌରବ କୁଳର ଶେଷ କୁଳାଙ୍ଗାର ଦୁର୍ଯ୍ୟୋଧନକୁ ଗାନ୍ଧାରୀଙ୍କ କ୍ରୋଧାଗ୍ନି ପ୍ରଜ୍ୱଳିତ ଚକ୍ଷୁ ସମ୍ମୁଖକୁ ଠେଲି ଦେଇ ଧ୍ୱଂସ ସ୍ତୂପ ଉପରେ ଯେଉଁ ସାରଳାଦାସଙ୍କ ଯାଦୁକାରୀ ଲେଖନୀ ସୃଷ୍ଟି-ସ୍ଥିତି-ପ୍ରଳୟକର୍ତ୍ତା ଶ୍ରୀକୃଷ୍ଣଙ୍କ ମୁହଁରେ ହସ ଫୁଟାଇ ଥିଲି ଶେଷ ହସର ଉଜ୍ଜ୍ୱଳ ରେଖା ସେହି ସାରଳାଙ୍କ ଲେଖନୀ ସତୀ ଗାନ୍ଧାରୀ ଓ ଯତି ଅଷ୍ଟାବକ୍ର ଋଷି ଅଭିଶାପରେ ଯାଦବକୁଳର ଧ୍ୱଂସ ସ୍ତୂପ ଉପରେ ଠିଆକରାଇ ଶ୍ରୀକୃଷ୍ଣଙ୍କ ଚକ୍ଷୁଯୁଗଳରୁ ନିଗାଡ଼ିଦେଇଛି ଶେଷ ଅଶ୍ରୁବିନ୍ଦୁ କୃଷ୍ଣଙ୍କ ଆଖିରୁ ଟୋପାଟୋପା ଶେଷ ଲୁହ । ଆଧୁନିକତାର ନିତ୍ୟ ନୂତନ ଶାରଳାଙ୍କ ଚିନ୍ତ କଳ୍ପ ତାଂକ ବିଚକ୍ଷଣ ମନୀଷାର ଚିରନ୍ତନ ଓ ଅନବଦ୍ୟ ।।



# ସହର ନଗର ଓ ପୁରପଲ୍ଲୀରେ ସାରଳା ସମାରୋହ

ଆର୍ଯ୍ୟ ମାନବର ପ୍ରଥମ ପ୍ରବେଶଦ୍ୱାର, ପ୍ରାଚୀନ ଚନ୍ଦ୍ରଭୂମି ତଥା ସର୍ବଭାରତୀୟ ଶିଳ୍ପ ନଗରୀ ରାଉରକେଲା ଛଅନମ୍ବର ସେକ୍ଟରରେ ଆଜକୁ ତ୍ରୟୋଦଶ ବର୍ଷଧରି "ସାରଳା ସାଂସ୍କୃତିକ ପରିଷଦ" ଆନୁ-କୂଲ୍ୟରେ ସାର୍ବଜନୀନ ଶ୍ରୀ ଶ୍ରୀ ସାରଳାପୂଜା, ସଙ୍ଗେ ଉତ୍କଳୀୟ ତଥା ମହାଭାରତୀୟ ମୂର୍ତ୍ତିକଳା ପ୍ରଦର୍ଶନ, ଶ୍ରୀଚଣ୍ଡୀ ପାରାୟଣ, ଆକାଶବାଣୀ କଣ୍ଠଶିଳ୍ପୀ ମାନଙ୍କ ଦ୍ୱାରା ଭଜନ ପରିବେଷଣ । ପ୍ରସାଦ ବିତରଣ ନାମସଂକୀର୍ତ୍ତନ, ଓଡ଼ିଆ ବାଘପାଲ, ସାରଳା ସାହିତ୍ୟସଭା ଓ ବହୁ ସଂସ୍କୃତିକ ସମାରୋହ ଆଦି ପାରମ୍ପାରିକ ରୀତିରେ ପାଳନ କରାଯାଉଛି ଏହିପୂଜା ପ୍ରତିବର୍ଷ ଚୈତ୍ରମାସରେ ମଧୁ ପାର୍ବଣ ଉପଲକ୍ଷେ ଅନୁଷ୍ଠିତ ହୋଇଥାଏ ।

ବିଭିନ୍ନାଞ୍ଚଳ ତଥା ଉପାନ୍ତଅଞ୍ଚଳ ରାଉରକେଲାର ଏହି ସାରଳା ସମାରୋହ ଦ୍ୱାରା ମୃତ ଓଡ଼ିଆ ସାହିତ୍ୟ ସଂସ୍କୃତିକୁ ପ୍ରାଣବନ୍ତ କରାଯିବ । ସଂଗେସଂଗେ ସାଧାରଣ ଜନମାନସରେ ଆଧାତ୍ମ ଚେତନା ଓ ଧର୍ମ ଭାବ ବୃଦ୍ଧି ପାଇଛି । ଉତ୍କଳୀୟ ଜାତୀୟତାର ଗର୍ବ ଓ ଗୌରବର ମଧ୍ୟ ଅଭିବୃଦ୍ଧି ଘଟିଛି । ଅନ୍ୟାନ୍ୟ ଧର୍ମ ଓ ସାଂପ୍ରଦାୟିକ ଆକର୍ଷଣ ଓ ଘନଘନ ଆକ୍ରମଣ କବଳରୁ ସନାତନ ଧର୍ମର ସୁରକ୍ଷା ନିମନ୍ତେ ଏକ ସେତୁ ରୂପେ କାର୍ଯ୍ୟ କରିଆସିଛି । ସମସ୍ତଙ୍କ ମଧ୍ୟରେ ଭାତୃଭାବ । ସହୃଦୟତା ଓ ଜାତୀୟ ସଂହତି ରକ୍ଷା କରିବା ଦିଗରେ ମଧ୍ୟ ବହୁ ଗୁରୁତ୍ୱ ପୂର୍ଣ୍ଣ ଭୂମିକା ଗ୍ରହଣ କରିଛି ସାରଳା ସାଂସ୍କୃତିକ ପରିଷଦ ।

ଚଳିତ ବର୍ଷ ତା୭ । ୪ । ୮୪ରିଖଠାରୁ ତା୧୪ । ୪। ୮୪ରିଖ ପର୍ଯ୍ୟନ୍ତ ଏକସପ୍ତାହ ବ୍ୟାପି ଏହି ଉତ୍ସବରେ ମୁଖ୍ୟ ଅତିଥି ଶ୍ରୀଯୁକ୍ତ ଦେବେନ୍ଦ୍ର ମୋହନ ପ୍ରହରାଜ । ଅଧ୍ୟକ୍ଷ ଇସ୍ପାତ କଲେଜ (୧୨ନଂ) ସରକାରୀ ମହାବିଦ୍ୟାଳୟର ଓଡ଼ିଆ ବିଭାଗ ପ୍ରଫେସର ଶ୍ରୀଯୁକ୍ତ ଧୀରେନ୍ଦ୍ରନାଥ ଶତପଥୀ ମୁଖ୍ୟବକ୍ତା, ସାରଳା ସାଂସ୍କୃତିକ ପରିଷଦ ଝଙ୍କଡ଼ର ସଂଗଠନ ସଂପାଦକ ତଥା ସାରଳାଟ୍ରଷ୍ଟର ସଂଗଠକ ଶ୍ରୀ ରମାକାନ୍ତ ରାଉଳ ସମ୍ମାନୀତ ବକ୍ତା ଓ ସ୍ଥାନୀୟ କବି କବିବର ପରିଡ଼ା ବକ୍ତାଭାବରେ ଯୋଗଦେଇ ସାରଳା ସାହିତ୍ୟର ଶାକ୍ତଦର୍ଶନ ଓ ବିଶ୍ୱର ଜନଜୀବନ ଉପରେ ଏହାର ପ୍ରଭାବ ଉପରେ ଆଲୋଚନା କରିଥିଲେ । ଶାରଳାପୀଠର ଗାୟକ ଶ୍ରୀ ନିରଂଜନ ରାଉଳଙ୍କ ଦ୍ୱାରା ପାଲି ବିଶିଷ୍ଟ ଏକକ ଅଭିନେତା ଶ୍ରୀ ବାଞ୍ଛାନିଧି ଶତପଥୀଙ୍କ ଦ୍ୱାରା ଶିକ୍ଷାମୂଳକ ଓ ହାସ୍ୟରସାତ୍ମକ (ଏକକ ଅଭିନୟ) ନାଟକ, ଭଜନସମାରୋହ ଓ ଚଳଚିତ୍ର ପ୍ରଦର୍ଶନ ଆଦି ମନୋରଂଜନ ତଥା ବହୁ ସାଂସ୍କୃତିକ କାର୍ଯ୍ୟମାନ ପରିବେଷ୍ଟିତ ହୋଇଥିଲି ।

ଅନୁଷ୍ଠାନରେ ସଭାପତି ଶ୍ରୀଯୁକ୍ତ ରବିନ୍ଦ୍ରନାଥ ଦାସ, ଓ ସର୍ବ ଶ୍ରୀ ବେଣୁଧର ରାଉତ, ଯଦୁମଣି ସାହୁ, ବାଇଧର ସ୍ୱାଇଁ ନିରାକାର ମହାପାତ୍ର, ବାସୁଦେବ ରାଉତ ସୁଚରିନ୍ଦ୍ର ଜେନା, ମଦନ ମୋହନ ସାହୁ, ବିକ୍ରମ ମହାପାତ୍ର, ଦୋଳଗୋବିନ୍ଦ ସେନାପତି, ମୋହନ ସେଠୀ ଗଜେନ୍ଦ୍ର ମହାପାତ୍ର, ସୁରେନ୍ଦ୍ର ଶତପଥୀ, ଶଙ୍କର୍ଷଣ ଲେଙ୍କା, ଅନାଦି ଚରଣ ମିଶ୍ର, କୃଷ୍ଣଚନ୍ଦ୍ର ସାହୁ, ଗୁଣନିଧି ଲେଙ୍କା, ଗୋପୀନାଥ ରଥ, ବୈଦ୍ୟନାଥ ସାହାଣୀ, କୁବେର ନାୟକ, ନାଗେଶ୍ୱର ଲେଙ୍କା, ଯଦୁମଣି ମିର୍ଦ୍ଧା ପ୍ରମୁଖ ସଭ୍ୟମାନେ ଏ ସମସ୍ତ କାର୍ଯ୍ୟକ୍ରମର ସଫଳ ରୂପାୟନ ଦିଗରେ ବାସ୍ତବିକ ପ୍ରଶଂସନୀୟ ଭୂମିକା ଗ୍ରହଣ କରିଅଛନ୍ତି । ଯୁଗାନ୍ତ ବ୍ୟାପି ଏହି କାର୍ଯ୍ୟକ୍ରମ ପ୍ରତି ଅକୁଣ୍ଠ ସାହାଯ୍ୟ ସହଯୋଗ ଆମର ଧେୟଥିଅଟେ ।

## ବିଭିନ୍ନ ସ୍ଥାନରେ ଶାରଳାମନ୍ଦିର (ଶାଖା) ସ୍ଥାପନ

ରାଉରକେଲାର ଏକନଂବର ସେକ୍ଟର, ସୁନ୍ଦରଗଡ଼ ଜିଲ୍ଲାର ଟେନସ ମାଇନସ କଟକଜିଲ୍ଲା ଆଳି ଅନ୍ତର୍ଗତ ଓଳାଉରଠାରେ ଶାରଳା ମନ୍ଦିର ପ୍ରତିଷ୍ଠା କରାଯାଇଅଛି । ପେଗରପଡ଼ା, କେନ୍ଦ୍ରାପଡା, ନିମାପଡା ଯାଜପୁର ଓ ବାଲେଶ୍ୱର ପଭୃତି ବିଭିନ୍ନ ଅଞ୍ଚଳରେ ଶ୍ରୀ ଶ୍ରୀ ଶାରଳା ଠାକୁରାଣୀଙ୍କ ଘଟପୂଜା ଓ ଶାରଳା ମେଳା ଆଦି ମହାସମାରୋହରେ ପାଳିତ ହେଉଅଛି ।

## କେନ୍ଦୁଝର ଦୈତାରୀ ମାଇନସରେ ସାରଳା ମହାଯଜ୍ଞ

ଚଳିତବର୍ଷ ତା୧୪ । ୨ । ୮୪ରିଖ ଠାରୁ ତା୧୭ । ୨ । ୮୪ରିଖ ପର୍ଯ୍ୟନ୍ତ ଚାରି ଦିନବ୍ୟାପି ଦୈତାରି ମାଇନ୍‌ସରେ ଶ୍ରୀଶ୍ରୀ ଶାରଳାମହାଯଜ୍ଞ ଅନୁଷ୍ଠିତହୋଇ ଯାଇଅଛି । ଉକ୍ତ ଉତ୍ସବରେ ଝଙ୍କଡ଼ ଶାରଳା ପୀଠରୁ ପଣ୍ଡିତ ଶ୍ରୀ ପିତାମ୍ବର ଆଚାର୍ଯ୍ୟ ପୁରୋଧା ଶ୍ରୀ ନଟବର ଦାଶ (ପୁସ୍ତକାଚାର୍ଯ୍ୟ) ଶ୍ରୀ ବାବାଜୀ ପଣ୍ଡା ପୁରୋହିତ ଓ ବହୁ ଯାଜ୍ଞିକ ପଣ୍ଡିତମାନେ ଯୋଗଦେଇଥିଲେ ଶାରଳା ମନ୍ଦିର ସେବକ ସର୍ବଶ୍ରୀ ସଚ୍ଚିଦାନଂଦ ରାଉଳ, ବନମାଳି ରାଉଳ ଶାରଦା ପ୍ରସାଦ ରାଉଳ, ଘଣ୍ଟ-ବାଦକ ଶ୍ରୀ ବସନ୍ତ ମହାନ୍ତି ପ୍ରଭୃତି ଯୋଗଦେଇ ଥିଲେ । ସାରଳାଟ୍ରଷ୍ଟ ଝଙ୍କଡ଼ର ସଂଗଠକ ଶ୍ରୀ ରମାକାନ୍ତ ରାଉଳ ପ୍ରତିଦିନ ସଂଧ୍ୟାରେ ଶାରଳା ସାହିତ୍ୟର ଶାକ୍ତ ଦର୍ଶନ ଓ ଶାରଳା ଦେବୀଙ୍କ ମହାମହିମା ବର୍ଣ୍ଣନାକରି ପ୍ରବଚନ ଦେଇଥିଲେ ।

ମାତୃଭକ୍ତ ପଣ୍ଡିତ ଶ୍ରୀ ଗୋପାଳ ବାବା ଓ ସ୍ଥାନୀୟ ଭଦ୍ରବ୍ୟକ୍ତି ସର୍ବଶ୍ରୀ ପ୍ରସନ୍ନ କୁମାର ମହାନ୍ତି, ବିଭୂଷଣ ସାହୁ, ଗଦାଧର ମହାପାତ୍ର, ଯୋଗୀ ଓ ଯୋଗେନ୍ଦ୍ର ସାହୁ, ରଘୁଦାଶ, ନିରଞ୍ଜନ ଦାଶ, ଗିରିଧାରି ଦାସ, ନଟବର ପ୍ରଧାନ, ପି . କେ . ଦାସ । କେ : ସି : ପଣ୍ଡା ପି : କେ : ସିଂ : କମଳାକାନ୍ତ ତ୍ରିପାଠୀ, ହରିନାଥ ନାୟକ, ଧରଣୀଧର

ସାହୁ, ସୁରେନ୍ଦ୍ର ସାହୁ, ବଳଭଦ୍ର ମିଶ୍ର, ବିଦ୍ୟାଧର ମହାନ୍ତ, ଖାଣ୍ଟୁଆ ବାବୁ ଓ ରଣାବାବୁ ପ୍ରମୁଖ ମାତୃଭକ୍ତ ମାନଙ୍କର ସହଯୋଗରେ ମହାଯଜ୍ଞ ଅତ୍ୟନ୍ତ ସୁନ୍ଦର ସୁରୁଚିରୂପେ ସଂପାଦନ ହୋଇଯାଇଛି । ଏହାପରି ପେଷୀରେ ସେମାନଙ୍କର ସାଧୁ ଉଦ୍ୟମ ପଛରେ ଜନ ସହଯୋଗ ଆମର କାମ୍ୟ ।

— o —

# ଓଡ଼ିଶାର ସବୁ ଅଞ୍ଚଳର ଶିକ୍ଷାୟତନରେ

## ସାରଳା ସାହିତ୍ୟର ବ୍ୟାପକ ପ୍ରଚାର

ସାରଳାଟ୍ରଷ୍ଟର ସଂଗଠକ ଶ୍ରୀ ରମାକାନ୍ତ ରାଉଳ ଚକ୍ରବର୍ତ୍ତୀ, କଟକ, ପୁରୀ, ବାଲେଶ୍ୱର, ଢେଙ୍କାନାଳ, ସମ୍ବଲପୁର, ସୁନ୍ଦରଗଡ଼ ଓ କେନ୍ଦୁଝର ଜିଲ୍ଲାର ବିଭିନ୍ନ ଶିକ୍ଷାନୁଷ୍ଠାନକୁ ପରିଭ୍ରମଣରେ ଯାଇ ମହାବିଦ୍ୟାଳୟ ଉଚ୍ଚ ବିଦ୍ୟାଳୟ ଓ କେତେକ ସାଂସ୍କୃତିକ ଅନୁଷ୍ଠାନର ଆୟୋଜିତ ସଭାରେ ଉତ୍କଳ ଭାରତୀ ସାରଳା, ସାରସ୍ୱତପୀଠ ଝଙ୍କଡ଼ ଆଦିକବି ଶାରଳାଦାସ ଓ ସାରଳାସାହିତ୍ୟର ବିଭିନ୍ନ ଦିଗରୁ ଆଲୋଚନା କରି ଉଦ୍‌ବୋଧନ ଦେବା ସଙ୍ଗେସଙ୍ଗେ ସଂଗୀତ, କଳା ନୃତ୍ୟ ବାଦ୍ୟ, ଚିତ୍ର, ସାହିତ୍ୟ ଓ ଉତ୍ତମସ୍ୱାସ୍ଥ୍ୟ ଦିଗରେ କୃତିତ୍ୱ ଅର୍ଜନ କରିଥିବା ଛାତ୍ର ଛାତ୍ରୀ ମାନଙ୍କୁ "ଶାରଳାଦର୍ଶନ" ପୁରସ୍କାର ଦେଇ ସେ ଦିଗରେ ଅଧିକ ଉଦ୍ୟମ କରିବା ପାଇଁ ଉତ୍ସାହିତ କରିଛନ୍ତି । ଏଥିନିମନ୍ତେ ଅନୁଷ୍ଠାନର ମୁଖ୍ୟ ଓ ସଂଚାଳିକାମାନେ ସହୃଦୟତା ପ୍ରଦର୍ଶନ କରିଥିବାରୁ ମା ଶାରଳାଙ୍କ ନିକଟରେ ସେମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ କାମନା କରୁ ।

(ସଂପାଦନା ମଣ୍ଡଳୀ)

# ତିନୋଟି ଜାଣିବା କଥା

କାୟା, ମନୋ ବାକ୍ୟରେ ମା ପାଦତଳେ ପୂର୍ଣ୍ଣ ଆତ୍ମ ସମର୍ପଣ କଲେ ମାତ୍ର ଦର୍ଶନ ମିଳେ ।

ଶୟନେ ସ୍ୱପନେ ଜାଗରଣେ ମା'ଙ୍କୁ ସ୍ମରଣ କଲେ ସଚ୍ଚିଦାନନ୍ଦମୟୀ ମା'ର କୃପାଲାଭ କରାଯାଏ ।

ଅତୀତର ଉଚ୍ଚ ଆଦର୍ଶ ଉପରେ ଭବିଷ୍ୟତରେ ଉନ୍ନତି ମୂଳକ ଲକ୍ଷ ନେଇ ବର୍ତ୍ତମାନର ଜୀବନକୁ କର୍ମ ମୁଖର କରି ଆଗେଇ ଯାଅ ।

''ନୈରାଶ୍ୟ''ର ଗୋଟିଏ ଭାଇ ହେଉଛି ସନ୍ଦେହ । —(ଓରେଲ)

"ବୀରତ୍ୱ"ର ଏକ ଅପରିହାର୍ଯ୍ୟ ଲକ୍ଷଣ ହେଉଛି ପ୍ରଚଣ୍ଡ ଆତ୍ମବିଶ୍ୱାସ
—(ଇମରସନ୍)

'ଦର୍ଶନ"ର ଏକ ମୌଳିକ ଅର୍ଥ ହେଉଛି- ଯେଉଁ ବିଜ୍ଞାନ ଦ୍ୱାରା ସତ୍ୟକୁ ବୁଝିହୁଏ । —(ରୁଷୋ)

ସତୀତ୍ୱ, ସଦ୍‌ଗୁଣ ଓ ସଲ୍ଲଜତା ନାରୀକୁ ରକ୍ଷା କରନ୍ତି ।—କୋଲଟନ୍

---

## ଏକ ଜ୍ଞାନ ଜ୍ଞାନ, ବହୁଜ୍ଞାନ ଅଜ୍ଞାନ

ଜ୍ଞାନୀ ବୋଲିଭଥିବା ବ୍ୟକ୍ତି ମା'ଠାରୁ ଦୂରରେ ରହେ । ଅଜ୍ଞାନୀ ଶିଶୁପରି ନିଜକୁ ଅସହାୟ ମନେ କଲେ ମା ନିଶ୍ଚୟ କୋଳକୁ ଟାଣିନେବ ।

# — ମାତୃବାଣୀ —

ମୋକ୍ଷାର୍ଥୀ ଜୀବର ମା' ପାଶେ ଏକମାତ୍ର ପ୍ରାର୍ଥନା
ମାୟାକୁ ଏଡ଼ାଇ ଦିଅ ମା' ଆଉ କିଛି ମାଗେନା

ଜୀବ ମାନେ ହିଁ ମାତୃ ଅଙ୍କସ୍ଥିତ ନଗ୍ନ ଶିଶୁ। ଏ କଥା ବର୍ଣ୍ଣର ସାହାଯ୍ୟରେ ଯୁକ୍ତି ସାହାଯ୍ୟରେ ବୁଝାଯାଏ ନାହିଁ। ସ୍ମରଣ ମାନେ ହିଁ ପ୍ରାଣରେ ମାତୃ ସ୍ୱରୂପ ଉଦ୍ଭାସିତ ହୁଏ।

"ତଜ୍ଜପସ୍ତଦର୍ଥ ଭାବନମ୍" ମାତୃ ସ୍ୱରୂପ ଚିନ୍ତନ ହିଁ ଜପ, ତୁମର ମା'ଙ୍କୁ କେଉଁଠାରେ ଖୋଜିବାକୁ ପଡ଼ିବ ନାହିଁ। ତୁମର କଣ୍ଠ ନିସୃତ ସମସ୍ତ ଶବ୍ଦ ହିଁ ମା' ତୁମେ ମା ବୋଲି ଡାକିଲେ, ସେହିତ ମା। ନାମ ଓ ନାମୀ ଅଭେଦ।

ଚୈତନ୍ୟମୟୀ ମାର ସ୍ୱରୂପକୁ ଜାଣେନା କହିଲେ ମିଥ୍ୟା ହେବ ଜାଣିଛି କହିଲେ ମଧ୍ୟ ମିଥ୍ୟା ହେବ।

ସତ୍ତ୍ୱଗୁଣୀ ଭକ୍ତ ଗୋପନରେ ଜପ, ତପ, ଦାନ, ଧ୍ୟାନ ଓ ଆରାଧନା ଦ୍ୱାରା, ରଜଗୁଣୀ- ମାଳା ତିଳକ ପାଠ ମୁକୁତା ପିନ୍ଧି ନାନା ଉପଚାର ପୂଜା ଉପାସନା ଦ୍ୱାରା, ମାତ୍ର ତମଗୁଣୀ, ଜ୍ୱଳନ୍ତ ବିଶ୍ୱାସରେ ଉତ୍କାୟିତ ହୋଇ ମା'ଠାରୁ ଯୋର କରି ନିଜର ଇପ୍ସିତ ଫଳ ଲାଭ କରିଥାଏ॥



# ନିବେଦନ

## ଏ କୁବେର ପୁତ୍ରମାନଙ୍କର ଧର୍ମଶାଳା— ୧୯୫୦

ଏକଦା ଏହି ଧର୍ମଶାଳାଟି ଝଙ୍କଡ଼ବାସିନୀ ଶ୍ରୀ ଶ୍ରୀ ଶାରଳାଙ୍କ ପୀଠରେ ଦୂରାଗତ ଧର୍ମପ୍ରାଣ ସାଧୁସନ୍ଥ ତଥା ତୀର୍ଥଯାତ୍ରୀମାନଙ୍କର ଏକମାତ୍ର ଆଶ୍ରୟସ୍ଥଳ ଥିଲା । କିନ୍ତୁ କାଳର କରାଳ କବଳରେ ତାହା ଆଜି ଜରାଜୀର୍ଣ୍ଣ ଅବସ୍ଥାରେ ଏ ଜାତିର ଗର୍ବ ଓ ଗୌରବର ମୂକ ସାକ୍ଷୀ ରୂପେ ପରିତ୍ୟକ୍ତ ଅବସ୍ଥାରେ ପଡ଼ିରହିଛି । ଯେଉଁମାନଙ୍କର ନିଃସ୍ୱାର୍ଥପର ତ୍ୟାଗ ଓ ପ୍ରଚେଷ୍ଟା ବଳରେ ଏଭଳି ଏକ ମହତ ଅନୁଷ୍ଠାନ ଗଢ଼ି ଉଠିଥିଲା, ସେମାନେ ଆଜି ଆମ ପାଖରେ ନାହାନ୍ତି ସତ, ମାତ୍ର ଏହି ପତନୋନ୍ମୁଖୀ ଧର୍ମଶାଳାଟି ସେମାନଙ୍କର ମାନବସେବା ଓ ଧର୍ମପରାୟଣ ମନୋଭାବକୁ ଉଦ୍‌ଜ୍ଜୀବିତ କରି ରଖିଛି ।

ଆମେ ସେହିମାନଙ୍କର ବଂଶଧର—ଯେଉଁମାନେ ସାଧବ ପୁଅ—କୁବେର ପୁତ୍ରନାମରେ ଖ୍ୟାତ । ଆମେ ଧନରେ–ମାନରେ ସମୃଦ୍ଧ ଆମ୍ଭମାନଙ୍କର ସମୂହ ଉଦ୍ୟମରେ ଏ ଜାତିର କୀର୍ତ୍ତି ଓ ଗୌରବ ନିଃସନ୍ଦେହରେ ସୁପ୍ରତିଷ୍ଠିତ ହୋଇପାରିବ ।

ଇତିମଧ୍ୟରେ 'ଶାରଳା ମଣ୍ଡଳ ତୈଳିକ ବୈଶ୍ୟ ମହାସଭା' ଉକ୍ତ ଧର୍ମଶାଳାର ପୁନରୁଦ୍ଧାର ପାଇଁ ଚେଷ୍ଟା ଚଳାଇଛନ୍ତି । ଶ୍ରୀ ଶାରଳା ଏଣ୍ଡାଓମେଣ୍ଟ ଟ୍ରଷ୍ଟ ବୋର୍ଡ଼ ଏପରି ସାଧୁ ଉଦ୍ୟମ ପାଇଁ ଆମର ମହାସଭାକୁ ସାଧୁବାଦ ଜଣାଇବା ସଙ୍ଗେ ସଙ୍ଗେ ଧର୍ମଶାଳା ପୁନର୍ନିର୍ମାଣ ନିମିତ୍ତ ସଦୟ ଅନୁମତି ପ୍ରଦାନ କରିଛନ୍ତି ।

ତେଣୁ ବର୍ତ୍ତମାନ ଆମ୍ଭମାନଙ୍କ ପାଇଁ ଏହା ଏକ ଗୁରୁଦାୟିତ୍ୱ । ଏ ଦାୟିତ୍ୱ ତୁଲାଇବାକୁ ବହୁଶ୍ରମ ଓ ଅର୍ଥର ଆବଶ୍ୟକ । ଏଭଳି ଆବଶ୍ୟକତାକୁ ପୂରଣ କରିବା କୌଣସି ବ୍ୟକ୍ତିବିଶେଷ ବା ଉଦ୍ୟମୀ

ବନ୍ଧୁ ମାନଙ୍କ ପକ୍ଷରେ ସହଜ ସାଧ୍ୟ ହୋଇ ନ ପାରେ । ମାତ୍ର ସମୂହ ଉଦ୍ୟମରେ ଏ ଭଳି ମହତ କାର୍ଯ୍ୟ ସହଜରେ ସମାହିତ ହୋଇ ପାରିବ ବୋଲି ଆମ୍ଭମାନଙ୍କର ଆଶା । ଅପର ପକ୍ଷରେ ଏଭଳି ଜାତିଗତ ଧର୍ମାନୁଷ୍ଠାନ ପାଇଁ ସମଷ୍ଟି ଶକ୍ତିଦାନ ଓ ତ୍ୟାଗ ଅଧିକ ବାଞ୍ଛନୀୟ ଓ ଶ୍ରେୟସ୍କର ।

ସୁତରାଂ ଏଭଳି ଏକ ଧର୍ମାନୁଷ୍ଠାନର ପୁନରୁଦ୍ଧାର କରି ଆମ ଜାତିର ସ୍ମୃତିଚିହ୍ନକୁ ଦୀର୍ଘଜୀବୀ କରିବା ପାଇଁ ଆମେ ବିଭିନ୍ନ ଅଞ୍ଚଳର ସ୍ୱଜାତୀୟ ତୈଳିକ ବୈଶ୍ୟ ଭାଇମାନଙ୍କୁ ସ୍ୱଇଚ୍ଛାରେ ଓ ମୁକ୍ତ ହସ୍ତରେ ଆର୍ଥିକ ସାହାଯ୍ୟ ଓ ସହଯୋଗ କରିବା ନିମିତ୍ତ ବିନମ୍ର ନିବେଦନ ଜଣାଉଛୁ ।

ନିବେଦକ

କନକପୁର, କଟକ **ଶାରଳା ମଣ୍ଡଳ ତୈଳିକ ବୈଶ୍ୟ ମହାସଭା**

ତା ୨୭ । ୩ । ୧୯୮୪ ଧର୍ମଶାଳା ପୁନରୁଦ୍ଧାର କମିଟି

Extract form the Trust Board meeting Proceeding
Dt 11. 2. 83 of Sarala Sree Endowment, Kanakpur.

୪ର୍ଥପ୍ରସ୍ତାବ: ଏହି ମନ୍ଦିର ସାମନା ବଜାର ପଛପଟରେ ବହୁବର୍ଷ ପୂର୍ବେ ତୈଳିକ ବୈଶ୍ୟ ମହାସଭା ତରଫରୁ ଯାତ୍ରୀମାନଙ୍କ ରହିବା ପାଇଁ ଧର୍ମଶାଳା ନିର୍ମାଣ କରିଥିଲେ । ଉକ୍ତ ଧର୍ମଶାଳା ଭାଙ୍ଗି ଯାଇଥିବାରୁ ଏହି ମନ୍ଦିରକୁ ଆସୁଥିବା ଯାତ୍ରୀ ସେଥିରେ ଆଶ୍ରୟନେଇ ପାରୁ ନଥିବାରୁ ପୁନରାୟ ଉକ୍ତ ଧର୍ମଶାଳାକୁ ପୁନରୁଦ୍ଧାର କରିବାକୁଅନୁମତିନିମନ୍ତେ ସମ୍ପାଦକ. ଶାରଳାମଣ୍ଡଳ ତୈଳିକ ମହାସଭା'ଧର୍ମଶାଳା ପୁନରୁଦ୍ଧାର କମିଟି, କନକପୁର, କଟକ ଏହି ଟ୍ରଷ୍ଟବୋର୍ଡକୁ ଗତ ତା୩୦-୧-୮୩ ରିଖରେ ଏକ ଆବେଦନ କରିଥିଲେ । ଏହି ସମ୍ପର୍କରେ ଆଲୋଚନା କରିବାରେ ଉକ୍ତ ମହାସଭା ଏକ ମହତ୍ତ କାର୍ଯ୍ୟ କରିବାକୁ ଆଗେଇଥିବାରୁ ଉକ୍ତ ମହାସଭାକୁ ଟ୍ରଷ୍ଟବୋର୍ଡ଼ ତରଫରୁ ଧନ୍ୟବାଦ ଦିଆଯିବା ସଙ୍ଗେ ସଙ୍ଗେ ଉକ୍ତ ଭଗ୍ନ ଧର୍ମଶାଳାକୁ ପୁନରୁଦ୍ଧାର କରିବାକୁ ଅନୁମତି ଦିଆଗଲା । ଏହି ମର୍ମରେ ଉକ୍ତ ପ୍ରସ୍ତାବର ନକଲ ଉକ୍ତ ମହାସଭାକୁ ଦେବାପାଇଁ ଇ:ଓ: ମହାଶୟଙ୍କୁ ପରାମର୍ଶ ଦିଆଗଲା । ଧର୍ମଶାଳାର ପ୍ଲାନ ଯୋଗାଇ ଦେବାକୁ ଇ:ଓ: ମହାଶୟଙ୍କୁ ମଧ୍ୟ ପରାମର୍ଶ ଦିଆଗଲା ।

ସ୍ୱା: **ଟ୍ରଷ୍ଟବୋର୍ଡର ସଭ୍ୟବୃନ୍ଦ**

# ଆପଣ ଜାଣନ୍ତି କି ?

ମହାଭାରତ ଯୁଦ୍ଧରେ — ପୋତା-ଲକ୍ଷ୍ମଣ କୁମାର
ପୋଡ଼ା-ଶଲ୍ୟ
ଭଗ୍ନ-ବେଲ୍ଲବଳୀ

ମହାଭାରତର ଛଅ ଶରଭେକ୍ଷ — ଦୁର୍ଯ୍ୟୋଧ, ପାଣ୍ଡବ କୁମାର, ଶିଖଣ୍ଡି, ଶତଧନୁ, ମହେଶ୍ୱର, ଶୋଷକ ।

ମହାଭାରତରେ କେଉଁ ତେରଜଣ ବନ୍ଦୀ ପଡ଼ିଥିଲେ— ଦୁର୍ଯ୍ୟୋଧ ଯୁଧିଷ୍ଠିର, ଭୀମ, ସବ୍ୟସାଚୀ, ସଂଜୟ, କୃଷ୍ଣ, ବିଦୁର, ଅଶ୍ୱତ୍ଥାମା, ଧୃତରାଷ୍ଟ୍ର, ଶ୍ରୀହରି, ନକୁଳ, ସହଦେବ ।

ଅର୍ଜ୍ଜୁନଙ୍କ ଦଶନାମ— ପାର୍ଥ, ଗାଣ୍ଡୀବ, କିରୀଟି, ଅର୍ଜ୍ଜୁନ, ଜିଷ୍ଣୁକୃଷ୍ଣ, ଧନଞ୍ଜୟ, ବୃହନ୍ନଳା, ଫାଲଗୁନ, ସବ୍ୟସାଚୀ, ଶ୍ୱେତବାହନ ।

କିଏ ଦୁଇ ଯୋନରୁ ଜନ୍ମ— ଜରାସନ୍ଧ

କିଏ ମାତ ବିନା ପିତାଠାରୁ ଜନ୍ମ— ମାନଧାତା, କଚ

କିଏ ଅବିବାହିତା ମାତାଠାରୁ ଜନ୍ମ— କର୍ଣ୍ଣ, ବ୍ୟାସ, ହନୁମାନ ଅଙ୍ଗଦ,

ପିତା ନଥାଇ ମାତାଠାରୁ ଜନ୍ମ - ଗଣେଶ, ଭଗୀରଥୀ

କାହାଠାରୁ କିଏ ଯାତ— ଇନ୍ଦ୍ରଙ୍କ ଲୋତକରୁ ପାରିଜାତ

ଲକ୍ଷ୍ମୀଙ୍କ ନେତ୍ରରୁ-ଅଁଳା ସତୀଙ୍କ ଲୋତକରୁ ମାଳତୀ ପୁଷ୍ପ

ସରସ୍ୱତୀଙ୍କ ନୟନରୁ—ସେବତୀ ପୁଷ୍ପର ଜନ୍ମ ।

ପୃଥିବୀର ନୟନରୁ— ଚମ୍ପା ଓ ପଦ୍ମ

# ଶ୍ରୀ ଶ୍ରୀ

# ସାରଳା ମନ୍ଦିର ପରିଚାଳକବୃନ୍ଦ

—ସାରଳା ମନ୍ଦିର ଟ୍ରଷ୍ଟବୋର୍ଡ଼—

୧ । ସଭାପତି ଶ୍ରୀଯୁକ୍ତ କ୍ଷେତ୍ରମୋହନ ବର୍ଣ୍ଣାଳ
୨ । ସଦସ୍ୟ ଶ୍ରୀଚରଣ ମହାନ୍ତି
୩ । ତହସିଲଦାର, ତିର୍ତ୍ତୋଲ
୪ । ରାଜକିଶୋର ମହାନ୍ତି, କଣ୍ଟାପଡ଼ା
୫ । ମହେଶ୍ୱର ଦାସ, ଜଇପୁର, ତିର୍ତ୍ତୋଲ ।

## କାର୍ଯ୍ୟାଳୟର କର୍ମକର୍ତ୍ତା ଓ କର୍ମଚାରୀ

୧ । ଏକ୍‌ଜିକ୍ୟୁଟିଭ ଅଫିସର—ଶ୍ରୀଯୁକ୍ତ ବଷ୍ଣୁଚରଣ ମହାପାତ୍ର
୨ । ତହସିଲଦାର—ଦୁର୍ଯ୍ୟୋଧନ ମହାନ୍ତି
୩ । ଆକାଉଣ୍ଟେଣ୍ଟ—ଶ୍ରୀଯୁକ୍ତ.......... ମିଶ୍ର
୪ । ମୋହରିର—ଶୁକଦେବ ମହାପାତ୍ର
୫ । କରଣୀ—ବାଇଧର ଜେନା
୬ । ଖମାରେଇ—ସାରଦା ଚରଣ ମହାନ୍ତି
୭ । ଭଣ୍ଡାରଘରିଆ—ବିଶ୍ୱନାଥ ପଣ୍ଡା
୮ । ଭୋଗଘରିଆ - ଧ୍ରୁବଚନ୍ଦ୍ର ପଣ୍ଡା
୯ । ପିଅନ—ହରିଚରଣ ସାହୁ
୧୦ । ମେହେନ୍ତର - ଶଙ୍କର ଗୋସ୍ୱାମୀ
୧୧ । ଧର୍ମଶାଳା ଜଗୁଆଳି—୧ । ନାରାୟଣ ରାଉଳ

## —ଦେବନୀତି ପରିଚାଳନା—

ବଡ଼ପଣ୍ଡା—ଶ୍ରୀ ଭଗୀରଥି ପଣ୍ଡା
ପୁରୋହିତ—ଶ୍ରୀ ଗନ୍ଧର୍ବରାଜ ଆଚାର୍ଯ୍ୟ
ପରିଚ୍ଛା—ଶ୍ରୀ ନୀଳମଣି ପଣ୍ଡା
ପୁସ୍ତକାଚାର୍ଯ୍ୟ ଶ୍ରୀ ପରୀକ୍ଷିତ ଆଚାର୍ଯ୍ୟ
ଶ୍ରୀଚଣ୍ଡୀ ପାଠକ—ଶ୍ରୀ ପୂର୍ଣ୍ଣଚନ୍ଦ୍ର ଷଡ଼ଙ୍ଗୀ
ପାଞ୍ଜିପାଠକ—ପଣ୍ଡିତ ରତ୍ନାପାଣି ଜ୍ୟୋତିଷ
ନଗୀଗ୍ରଣିକ—ଶ୍ରୀ ନିରଞ୍ଜନ ପଣ୍ଡା
କାହାଳିଆ—ଶ୍ରୀ ବିଷ୍ଣୁଚରଣ ଜେନା
ତତ୍ତ୍ୱାବଧାନ—ଶ୍ରୀ ବିଦ୍ରବର ସିଂ
ସୂଚନାଙ୍କ ଓ ଲୋକସଂପର୍କ—ଶ୍ରୀ........ ... ...... ..
ବିଃଦ୍ରଃ—ଏତଦ୍‌ ବ୍ୟତୀତ ପ୍ରାୟ ପାଞ୍ଚଶହ ୫ ବିଭିନ୍ନ ସେବାୟତମାନେ ସମସ୍ତ ଦେବନୀତି କାର୍ଯ୍ୟରେ ସହଯୋଗ କରିଥାଆନ୍ତି । ଛତିଶା ନିଯୋଗର ମଧ୍ୟ ବ୍ୟବସ୍ଥା ରହିଛି ।

## —ଶାରଳା ମନ୍ଦିରରେ ସନ୍ଧ୍ୟା ପ୍ରାର୍ଥନା—

କବି ଶ୍ରୀ ମଧୁସୂଦନ ରାଉଳ, ସୁଧୀରଚନ୍ଦ୍ର ରାଉଳ କେଳୁଚରଣ ରାଉଳ, ବିବେକାନନ୍ଦ ନାୟକ ହରେକୃଷ୍ଣ ନାୟକ ନିରଞ୍ଜନ ରାଉଳ ଓ ଧ୍ରୁବଚରଣ ନାୟକ ।

ସ୍ୱରସଂଯୋଜନା ଓ ବାଦକ—ଶ୍ରୀ ବସନ୍ତ କୁମାର ମହାନ୍ତି
ସହଯୋଗୀ କିଶୋର ଗାୟକ—ଅଶୋକ, ବିଜୟ, ତପନ, ବଙ୍କିମ, ଗୋଲକ, ବାଇନ, ସଚୀକାନ୍ତ ଓ ଅନ୍ୟମାନେ ।





**ଆଦିକବି ସାରଳାଦାସ ମହାବିଦ୍ୟାଳୟ ବିଜ୍ଞାନ ଭବନ ।**

ଶିକ୍ଷା କ୍ଷେତ୍ରରେ ଆଦିକବି ସାରଳାଦାସ ମହାବିଦ୍ୟାଳୟ ଯେପରି ସୁନାମଧନ୍ୟ ସାହିତ୍ୟ କ୍ଷେତ୍ରରେ "ସପ୍ତର୍ଷି" ଓ ମାଘସପ୍ତମୀରେ ସାରଳା ସାହିତ୍ୟସଂଘ, ସଂସ୍କୃତିକ କ୍ଷେତ୍ରରେ ବିଭିନ୍ନ ସାଂସ୍କୃତିକ ବିଚିତ୍ର । ସେହିପରି ଜନମଙ୍ଗଳ ସାଧନ ଦିଗରେ ମଧ୍ୟ ଜାତୀୟ ସେବା ସଂସ୍ଥା ଶିବିରମାନ ସ୍ଥାପନ ଆଦି ଉଲ୍ଲେଖ ଯୋଗ୍ୟ ଅଟେ ॥

